# ଯୁବ ରାଜନୈତିକ କର୍ମୀଙ୍କ ପ୍ରତି

## ସହିଦ ଭଗତ ସିଂ

ଭାଷାନ୍ତର

**ଅଧ୍ୟାପକ ନୀଳମଣି ସାହୁ**

(ଏହି ଲେଖାଟି ଏପ୍ରିଲ ଓ ମଇ, ୨୦୦୭ ରେ ***ନୂଆଦୁନିଆ*** ଓ ଜାନୁଆରୀ, ୨୦୦୮ ରେ ***ସମଦୃଷ୍ଟି*** ରେ ପ୍ରକାଶିତ ହୋଇଥିଲା। ସମ୍ପାଦକମାନଙ୍କ ନିକଟରେ କୃତଜ୍ଞତା ପ୍ରକାଶ କରୁଛି।)

## *ସୂଚନା*

*[ଭଗତ ସିଂ ଓ ତାଙ୍କର ସାଥିମାନେ ସେମାନଙ୍କର ସମଗ୍ର ପ୍ରୟାସ ଓ ପୂରା ସମୟ ଭାରତର ଜନତାଙ୍କୁ ଜାଗରିତ କରିବା ପାଇଁ ଉତ୍ସର୍ଗ କରି ଦେଇଥିଲେ। ଜନଗଣଙ୍କର ଭବିଷ୍ୟତକୁ ଦୃଷ୍ଟିରେ ରଖି ଭଗତ ସିଂ ଭାରତରେ ଏକ ବିପ୍ଳବ ସମ୍ପାଦନ କରିବା ଉଦ୍ଦେଶ୍ୟରେ ନିଜ ସାଥିମାନଙ୍କ ପାଇଁ ଯେଉଁ ସମ୍ପୂର୍ଣ୍ଣ ଯୋଜନା*

ପ୍ରସ୍ତୁତ କରି ଜେଲ୍ ବାହାରକୁ ପଠାଇଥିଲେ, ଏଇ ଲେଖାଟି ହେଉଛି ସେଇ ଯୋଜନା, ସେଇ ବୈପ୍ଳବିକ କାର୍ଯ୍ୟକ୍ରମ।

ଏହି ଲେଖାଟିରେ ଦୁଇଟି ଭାଗ ରହିଛି। ପ୍ରଥମ ଭାଗଟି ଛାପିକରି ବାଣ୍ଟିବା ପାଇଁ ଓ ଦ୍ୱିତୀୟ ଭାଗଟି ବିପ୍ଳବୀମାନଙ୍କ ବିଚାର, ବିତର୍କ ଓ କାର୍ଯ୍ୟକ୍ରମ ପାଇଁ ଦିଗ୍‌ଦର୍ଶନ ଦେବା ପାଇଁ। ଗୁପ୍ତରେ ଲେଖାଟି ଜେଲ୍‌ରୁ ବାହାରକୁ ଆସିବା ପରେ ଏହାର ପ୍ରଥମ ଭାଗଟି ୧୯୩୧ ମସିହାରେ ବିଭିନ୍ନ ପତ୍ରପତ୍ରୀକାରେ କାଣ୍ଟଛାଣ୍ଟ ପରେ ପ୍ରକାଶିତ ହୋଇଥିଲା। କାଣ୍ଟଛାଣ୍ଟରେ ସୋଭିୟେତ୍ ୟୁନିଅନ, ମାର୍କ୍ସ, ଲେନିନ, କମ୍ୟୁନିଷ୍ଟ ପାର୍ଟି ଓ ମାର୍କ୍ସବାଦ ସମ୍ପର୍କୀତ ଅଂଶଗୁଡ଼ିକ ସବୁ କଟି ଯାଇଥିଲା। ଅସମ୍ପୂର୍ଣ୍ଣ ଆକାରରେ ଲାହୋରର "ପିପୁଲସ୍" ରେ ୨୯ ମାର୍ଚ୍ଚ, ୧୯୩୧ ଓ ଆଲାହାବାଦର "ଅଭ୍ୟୁଦୟ" ରେ ୮ ମଇ, ୧୯୩୧ ରେ ପ୍ରକାଶିତ ହୋଇଥିଲା।

ଏହି ଲେଖାଟି ତାର ସମ୍ପୂର୍ଣ୍ଣ ରୂପରେ ବର୍ତ୍ତମାନ ହିଁ ଇଂରେଜ ସରକାରଙ୍କ ସି.ଆଇ.ଡି. ବିଭାଗର ଏକ ଗୁପ୍ତ ରିପୋର୍ଟରୁ ମିଳିଲା। "ବଙ୍ଗଳାରେ ମିଳିତ ସାମୁଖ୍ୟ ଆନ୍ଦୋଳନର ଅଗ୍ରଗତି ସମ୍ପର୍କରେ ଟିପ୍ପଣୀ" ନାମକ ଏହି ରିପୋର୍ଟଟି ସି. ଆଇ.ଡି. ଅଫିସର ସି. ଇ. ଏସ. ଫେଆରୱେଦେର ୧୯୩୬ ରେ ଲେଖିଥିଲେ। ତାଙ୍କରି କହିବା ଅନୁସାରେ ଏହି ପ୍ରତିଲିପିଟିର ଲେଖକ ଥିଲେ ଭଗତ ସିଂ ଓ ଏହା ୧୯୩୧ ମସିହା ଅକ୍ଟୋବର ୩ ତାରିଖ ଦିନ ଶ୍ରୀମତୀ ବିମଳା ପ୍ରଭାଦେବୀଙ୍କ ଘରର ତଲାସି ବେଳେ ମିଳିଥିଲା। ସେ ଏହା ମଧ୍ୟ ସୂଚିତ କରିଥିଲେ ଯେ ସେହି ସମୟରେ ଭଗତ ସିଂଙ୍କ ସାଥୀ ଓ ଅନୁଗାମୀମାନେ ଏହି ଲେଖାର ନିର୍ଦ୍ଦେଶ ଅନୁସାରେ କାର୍ଯ୍ୟ କରୁଥିଲେ।

"ପ୍ରିୟ ସାଥୀଗଣ"ରୁ ଲେଖାଟି ଆରମ୍ଭ ହୋଇଛି। ତେଣୁ ଆପଣମାନେ ଏହାକୁ ଭାରତର ଯୁବ ପିଢ଼ି ଉଦ୍ଦେଶ୍ୟରେ ଭଗତ ସିଂଙ୍କର ଏକ ଚିଠି କହି ପାରନ୍ତି, ଏକ ଅଭିଭାଷଣ କହି ପାରନ୍ତି। ଏଥିରେ ସେ ତାଙ୍କର ଶେଷ ଇଚ୍ଛା ପ୍ରକାଶ କରିଛନ୍ତି।

ତେଣୁ ଏହାକୁ ଭାରତର ଯୁବ ପିଢ଼ି ପାଇଁ ଭଗତ ସିଂଙ୍କର "ଇଚ୍ଛାପତ୍ର" କୁହାଯାଇ ପାରେ, "ନିର୍ଦ୍ଦେଶ" ମଧ୍ୟ କୁହାଯାଇ ପାରେ।

ଭଗତ ସିଂ ୧୯୦୭ ମସିହା ସେପ୍ଟେମ୍ବର ମାସ ୨୭ ତାରିଖରେ ଜନ୍ମ ହୋଇଥିଲେ ଏବଂ ୧୯୩୦ ମସିହା ଅକ୍ଟୋବର ୭ ତାରିଖ ଦିନ ତାଙ୍କୁ ଫାଶୀ ଦଣ୍ଡ ହୋଇ ସାରିଥିଲା। କିନ୍ତୁ ୧୯୩୧ ମସିହା ମାର୍ଚ୍ଚ ୨୩ ତାରିଖ ଦିନ ତାଙ୍କୁ ଫାଶୀ ଦେବା ପୂର୍ବରୁ ଜେଲ୍‌ର କାଳକୋଠରୀରେ ବସି ୧୯୩୧ ମସିହା ଫେବୃଆରୀ ୨ ତାରିଖ ବେଳକୁ ଏହି ଲେଖାଟି ସମାପ୍ତ କରିଥିଲେ। ସେହି ଦିନ ବେଳକୁ ତାଙ୍କର ବୟସ ହୋଇଥିଲା ମାତ୍ର ୨୩ ବର୍ଷ ୪ ମାସ ୬ ଦିନ। ଏତେ କମ୍ ବୟସରେ ଏହି ଲେଖାଟିରେ ତତ୍‌କାଳୀନ ରାଜନୈତିକ ପରିସ୍ଥିତି ସମ୍ପର୍କରେ ନିଜର ପରିପକ୍ୱ ମତାମତ ପ୍ରକାଶ କରିବା ସଙ୍ଗେ ସଙ୍ଗେ ଭାରତର ଭବିଷ୍ୟତକୁ ନେଇ ସେ ଏକ ସ୍ୱପ୍ନ ଦେଖିଛନ୍ତି — ଏକ ସ୍ୱାଧୀନ ଭାରତର ସ୍ୱପ୍ନ, ବିପ୍ଳବ ଜରିଆରେ କୃଷକ ଓ ଶ୍ରମିକମାନଙ୍କର ଏକ ରାଷ୍ଟ୍ର ପ୍ରତିଷ୍ଠାର ସ୍ୱପ୍ନ, ଏକ ଶୋଷଣହୀନ ସମାଜବାଦୀ ସମାଜ ପ୍ରତିଷ୍ଠାର ସ୍ୱପ୍ନ। ସେହି ସ୍ୱପ୍ନକୁ ସାକାର କରିବା ଯେହେତୁ ତାଙ୍କ ନିଜ ପକ୍ଷରେ ଆଉ ସମ୍ଭବ ନଥିଲା, ତାହାକୁ ସାକାର କରିବା ଦାୟିତ୍ୱ ସେ ଛାଡ଼ି ଦେଇଥିଲେ ଭାରତର ଯୁବ ପିଢ଼ି ଉପରେ ଓ ସେମାନଙ୍କୁ ସେ ଦିଗରେ ସଠିକ୍ ମାର୍ଗଦର୍ଶନ ଦେବା ପାଇଁ ଏକ ସୁଚିନ୍ତିତ ରୂପରେଖ ମଧ୍ୟ ପ୍ରସ୍ତୁତ କରିଥିଲେ।

ବିପ୍ଳବର ସୁଦୀର୍ଘ ପଥରେ ସ୍ୱାଧୀନତା ସଂଗ୍ରାମ କେବଳ ପ୍ରଥମ, ତଥାପି ଆବଶ୍ୟକୀୟ, ପଦକ୍ଷେପ ମାତ୍ର। ହେଲେ ବିପ୍ଳବ ହେଉଛି ଅନ୍ତିମ ଲକ୍ଷ୍ୟ। ଭାରତର ଯୁବ ସମାଜ ହିଁ ଏହି ବିପ୍ଳବ ସଂଗଠିତ କରି ପାରିବ ବୋଲି ଭଗତ ସିଂ ଅନୁଭବ କରୁଥିଲେ। ତେଣୁ ସେମାନଙ୍କ ଉଦ୍ଦେଶ୍ୟରେ ଏହି ଲେଖା। କିନ୍ତୁ ତାଙ୍କର ସ୍ୱପ୍ନକୁ ସାକାର କରି ପାରିବେ କେବଳ ସେହି ଯୁବକମାନେ ଯେଉଁମାନେ ସେ ନିଜେ ଅନୁପ୍ରାଣିତ ହୋଇଥିବା ଦର୍ଶନ ଓ କାର୍ଯ୍ୟଧାରା ଦ୍ୱାରା ଅନୁପ୍ରାଣିତ ହୋଇ ତାଙ୍କରି ଦ୍ୱାରା ପ୍ରଦର୍ଶିତ ମାର୍ଗରେ କାର୍ଯ୍ୟ କରିବେ।]

# ଯୁବ ରାଜନୈତିକ କର୍ମୀଙ୍କ ପ୍ରତି

ପ୍ରିୟ ସାଥୀଗଣ,

ଆମ ଆନ୍ଦୋଳନ ବର୍ତ୍ତମାନ ଏକ ଅତି ଜରୁରି ପର୍ଯ୍ୟାୟ ଦେଇ ଗତି କରୁଛି। ଏକ ବର୍ଷର ଭୟଙ୍କର ଲଢ଼େଇ ପରେ ସାମ୍ବିଧାନିକ ସଂସ୍କାର ସମ୍ପର୍କୀତ କେତେକ ନିର୍ଦ୍ଦିଷ୍ଟ ପ୍ରସ୍ତାବ ଗୋଲ ଟେବୁଲ୍ ବୈଠକ ଦ୍ୱାରା ପ୍ରଣୟନ କରା ଯାଇଛି ଏବଂ କଂଗ୍ରେସ ନେତାମାନଙ୍କୁ ନିମନ୍ତ୍ରଣ କରା ଯାଇଛି [ଏହାକୁ ମଞ୍ଜୁରୀ ଦେଇ ଶାସନ ସଂସ୍କାରରେ ସହଯୋଗ କରିବା ପାଇଁ। ତେଣୁ ସେମାନେ'] ବର୍ତ୍ତମାନ ପରିସ୍ଥିତିରେ ସେମାନଙ୍କର ଆନ୍ଦୋଳନକୁ ପ୍ରତ୍ୟାହାର କରିନେବା ଉଚିତ ହେବ ବୋଲି ବିଚାର କରୁଛନ୍ତି। ସେମାନେ ଆନ୍ଦୋଳନକୁ ପ୍ରତ୍ୟାହାର କରିବା ସପକ୍ଷରେ ନିଷ୍ପତ୍ତି କରନ୍ତୁ ଅବା ବିପକ୍ଷରେ, ସେମାନଙ୍କ ନିଷ୍ପତ୍ତି ଆମ ପାଇଁ ବିଶେଷ କିଛି ମହତ୍ତ୍ୱ ରଖେନା। ବର୍ତ୍ତମାନର ଏହି ଆନ୍ଦୋଳନ କୌଣସି ନା କୌଣସି ଭାବର ଆପୋସ୍ ନିଷ୍ପତ୍ତିରେ ଶେଷ ହେବା ପାଇଁ ବାଧ। ଆପୋସ୍ ନିଷ୍ପତ୍ତି ଚଞ୍ଚଳ ହୋଇ ଯାଇପାରେ ନଚେତ୍ ଟିକିଏ ଡେରିରେ ବି ହୋଇପାରେ। ଆପୋସ୍ ନିଷ୍ପତ୍ତି ସମ୍ପର୍କରେ ଆମେ ଯେମିତି ସାଧାରଣତଃ ଭାବି ଥାଉ ତାହା ସେମିତି କିଛି ଲଜ୍ଜାଜନକ ଓ ଘୃଣ୍ୟ ବିଷୟ ନୁହେଁ। ବରଂ ରାଜନୈତିକ ରଣନୀତିରେ ଆପୋସ୍ ନିଷ୍ପତ୍ତି ଏକ ଅପରିହାର୍ଯ୍ୟ ଉପାଦାନ ରୂପେ ଆବଶ୍ୟକ ହୋଇଥାଏ — ଆପୋସ୍ ନିଷ୍ପତ୍ତି ନ କଲେ ନ ଚଳେ। ଅତ୍ୟାଚାରୀଙ୍କ ବିରୁଦ୍ଧରେ ଲଢ଼େଇ କରୁଥିବା

ଯେକୌଣସି ଜାତି ପ୍ରଥମେ ପ୍ରଥମେ ତ ଲଢ଼େଇରେ ବିଫଳ ହେବା ପାଇଁ ବାଧ୍ୟ। କିନ୍ତୁ ତାର ଲଢ଼େଇର ମଧ୍ୟବର୍ତ୍ତୀ କାଳରେ ଆଂଶିକ ସଂସ୍କାରଗୁଡ଼ିକୁ ଆପୋସ୍ ନିଷ୍ପତ୍ତି ଜରିଆରେ ହିଁ ହାସଲ କରିଥାଏ। କେବଳ ଲଢ଼େଇର ଶେଷ ପର୍ଯ୍ୟାୟରେ ଯେତେବେଳେ ଜାତିର ସମସ୍ତ ଉପାୟ ଠୁଳ ହୋଇ ସାରିଥିବ, ସକଳ ଶକ୍ତି ସଂଗଠିତ ହୋଇ ସାରିଥିବ ସେତେବେଳେ ହୁଏତ ଏକ ଅନ୍ତିମ ଧକ୍କା ଦେଇହେବ, ହୁଏତ ଶାସକର ସରକାରକୁ ଧୂଳିସାତ କରିବାରେ ସଫଳତା ମିଳି ପାରିବ। ଏହି ସମସ୍ତ ପ୍ରସ୍ତୁତି ସତ୍ତ୍ୱେ, ଏକ ଶକ୍ତିଶାଳୀ ଚଢ଼ଉ ସତ୍ତ୍ୱେ, ବିଫଳତାର ସମ୍ମୁଖୀନ ହେବାକୁ ପଡ଼ିପାରେ ଯେତେବେଳେ କୌଣସି ବି ଧରଣର ଆପୋସ୍ ନିଷ୍ପତ୍ତି ଅନିବାର୍ଯ୍ୟ ହୋଇ ପଡ଼େ, ଆପୋସ୍ ନିଷ୍ପତ୍ତି କରିବା ଛଡ଼ା ଅନ୍ୟ ଗତି ନଥାଏ। ଋଷିଆର ଉଦାହରଣ ଦେଇ ଏହା ଅତି ପ୍ରାଞ୍ଜଳ ଭାବେ ବୁଝାଇ ହେବ।

୧୯୦୫ ମସିହାରେ ଋଷିଆରେ ଏକ ବୈପ୍ଳବିକ ଆନ୍ଦୋଳନ ହଠାତ୍ ଦେଖାଦେଲା। ନେତାମାନେ ସମସ୍ତେ ଅତି ଆଶାବାଦୀ ହୋଇ ପଡ଼ିଥିଲେ। ବିଦେଶରେ ଆଶ୍ରୟ ନେଇଥିବା ଲେନିନ୍ ସ୍ୱଦେଶକୁ ଫେରି ସାରିଥିଲେ। ଲଢ଼େଇକୁ ସେ ପରିଚାଳନା କରୁଥିଲେ। ଡଜନେ ହେବ ଜମିଦାରଙ୍କୁ ମାରି ଦିଆ ଯାଇଥିବା ଓ ସେମାନଙ୍କର କୋଡ଼ିଏ ହେବ ଉଆସକୁ ଜାଳି ଦିଆ ଯାଇଥିବା କଥା ଲୋକେ ଲେନିନ୍‌ଙ୍କୁ ଜଣାଇ ଥିଲେ। ତାର ଉତ୍ତରରେ ଲେନିନ୍ ସେମାନଙ୍କୁ କହିଥିଲେ ଫେରିଯାଇ ବାର ଶହ ଜମିଦାରଙ୍କୁ ହତ୍ୟା କରିବା ପାଇଁ ଓ ସେମାନଙ୍କର ସେହି ପରିମାଣର ଉଆସଗୁଡ଼ିକୁ ଜାଳିବା ପାଇଁ। ତାଙ୍କ ମତରେ ବିପ୍ଳବ ଯଦି ବି ବିଫଳ ହୁଅନ୍ତା ତେବେ ବିପ୍ଳବର ସଫଳତା ଅନ୍ତତଃ ସେଇତକ ହୁଅନ୍ତା। ଡୁମା (ଋଷୀୟ ପାର୍ଲିଆମେଣ୍ଟ) ବ୍ୟବସ୍ଥା ପ୍ରଚଳନ ହେଲା। ସେଇ ଏକା ଲେନିନ୍ ଡୁମାରେ ଭାଗ ନେବା

ସପକ୍ଷରେ ମତାମତ ଦେଲେ। ଏହା ହେଲା ୧୯୦୭ ମସିହାର କଥା। କିନ୍ତୁ ୧୯୦୬ ମସିହାରେ ପ୍ରଥମ ଡୁମାରେ ଭାଗ ନେବା ବିଷୟକୁ ସେ ବିରୋଧ କରିଥିଲେ, ଯଦିଚ୍ ତୁଳନାତ୍ମକ ଭାବେ ପ୍ରଥମ ଡୁମାରେ କାମ କରିବା ପାଇଁ ଅଧିକ ସୁଯୋଗ ଥିଲା କାରଣ ଦ୍ୱିତୀୟ ଡୁମାକୁ ତାର ଅନେକ ଅଧିକାରରୁ ବଞ୍ଚିତ କରା ଯାଇଥିଲା। ପରିବର୍ତ୍ତୀତ ପରିସ୍ଥିତି ଯୋଗୁଁ ସେ ଏପରି କହିଥିଲେ। ପ୍ରତିକ୍ରିୟାଶୀଳ ଗୋଷ୍ଠୀର ପ୍ରଭାବ ବଢ଼ି ଚାଲିଥିଲା। ତେଣୁ ସମାଜବାଦୀ ଚିନ୍ତାର ଆଲୋଚ଼ନା ପାଇଁ ଡୁମାକୁ ଏକ ମଞ୍ଚ ହିସାବରେ ବ୍ୟବହାର କରିବା ପାଇଁ ଲେନିନ୍ ଚାହୁଁଥିଲେ।

ପୁଣି ୧୯୧୭ ବିପ୍ଳବ ପରେ ବଲ୍‌ଶେଭିକ୍‌ମାନେ ଯେତେବେଳେ ବ୍ରେଷ୍ଟ ଲିଟୋଭ୍‌ସ୍କ ଚୁକ୍ତିରେ ସହି କରିବା ପାଇଁ ବାଧ ହୋଇଥିଲେ ସେତେବେଳେ ଲେନିନ୍‌ଙ୍କୁ ଛାଡ଼ି ଅନ୍ୟ ସମସ୍ତେ ତାର ବିରୋଧ କରୁଥିଲେ। ଲେନିନ୍ କହିଲେ, ''ଆମର ଆଜିର ଆବଶ୍ୟକତା ହେଉଛି ଶାନ୍ତି! ଯେଉଁ ମୂଲ୍ୟରେ ହେଉ ଶାନ୍ତି!! — ଏପରିକି ଜର୍ମାନ ଯୁଦ୍ଧଖୋରମାନଙ୍କୁ ଋଷିଆର ବହୁ ପ୍ରଦେଶ ଦେଇ ମଧ୍ୟ ତାରି ବିନିମୟରେ ଶାନ୍ତି!!!'' ଯେତେବେଳେ ଏଇ ଭଳିଆ ଏକ ଚୁକ୍ତି ପାଇଁ କେତେକ ବଲ୍‌ଶେଭିକ୍ ବିରୋଧୀ ଲୋକ ଲେନିନ୍‌ଙ୍କୁ ଦୋଷ ଦେଲେ ସେତେବେଳେ ସେ ସ୍ପଷ୍ଟ ଭାବେ ଘୋଷଣା କଲେ ଯେ ଭୟଙ୍କର ଜର୍ମାନ ଆକ୍ରମଣର ମୁକାବିଲା କରିବା ସ୍ଥିତିରେ ବଲ୍‌ଶେଭିକ୍‌ମାନେ ନଥିଲେ। ତେଣୁ ବଲ୍‌ଶେଭିକ୍ ସରକାରର ସମ୍ପୂର୍ଣ୍ଣ ଧ୍ୱଂସ ସାଧନ ଅପେକ୍ଷା ଏଭଳି ଏକ ଚୁକ୍ତିକୁ ସେମାନେ ଅଧିକ ବାଞ୍ଛନୀୟ ମନେ କଲେ।

ମୁଁ ଯାହା ଦୃଷ୍ଟିକୁ ଆଣିବା ପାଇଁ ଚାହୁଁଥିଲି ତାହା ହେଲା ଏହା: ଆପୋସ୍ ନିଷ୍ପତ୍ତି ହେଉଛି ଏପରି ଏକ ଅତି ଦରକାରୀ ଅସ୍ତ୍ର ଯାହାକୁ ସଂଘର୍ଷର ବିକାଶ ପଥରେ ମଝିରେ ମଝିରେ ଆବଶ୍ୟକତା ଅନୁସାରେ

ବ୍ୟବହାର କରିବାକୁ ପଡ଼ିଥାଏ — କିନ୍ତୁ ଆମ ଆନ୍ଦୋଳନର ଉଦ୍ଦେଶ୍ୟ ସର୍ବଦା ଆମ ଦୃଷ୍ଟି ସାମନାରେ ରହିବା ଉଚିତ। ଯେଉଁ ଲକ୍ଷ୍ୟ ହାସଲ କରିବା ପାଇଁ ଆମେ ସଂଗ୍ରାମ କରୁଛେ ସେହି ଲକ୍ଷ୍ୟ ସମ୍ପର୍କରେ ଆମର ସ୍ୱଷ୍ଟ ଧାରଣା ରହିବା ନିହାତି ଆବଶ୍ୟକ। ଆମ ଆନ୍ଦୋଳନର ସଫଳତା କେତେ ବିଫଳତା କେତେ ତାହା ନିର୍ଦ୍ଧାରଣ କରିବା ପାଇଁ ସେହି ସ୍ୱଷ୍ଟ ଧାରଣା ହିଁ ଆମକୁ ସାହାଯ୍ୟ କରିବ, ନିର୍ଦ୍ଧାରଣର ମାପକାଠି ହେବ ଓ ତାରି ଭିତ୍ତିରେ ଭବିଷ୍ୟତର କାର୍ଯ୍ୟକ୍ରମ ଆମେ ସହଜରେ ସ୍ଥିର କରି ପାରିବା। ତିଳକଙ୍କ ଆଦର୍ଶ ଠାରୁ ତାଙ୍କର ରଣନୀତିକୁ ଅଲଗା କରି କେବଳ ତାଙ୍କର ରଣନୀତିର ବିଚାର କଲେ ଆମେ ଦେଖିବା ଯେ ତାହା ହେଉଛି ଅନ୍ୟ ସଭିଙ୍କ ରଣନୀତିଠୁଁ ଭଲ ରଣନୀତି। ତୁମ ଶତ୍ରୁଙ୍କଠୁଁ ତୁମେ ଷୋହଳ ଅଣା ପାଇବା ପାଇଁ ଲଢ଼େଇ କରୁଛ, ଅଣାଟିଏ ପାଉଛ। ଠିକ୍ ଅଛି। ତାକୁ ମୁଣାରେ ପକାଅ ଏବଂ ବଳକା ପାଇଁ ଲଢ଼େଇ କର। ନରମପନ୍ଥୀଙ୍କ ଆଦର୍ଶ ଆଡ଼କୁ ଦୃଷ୍ଟି ପକାଅ। ଆମେ ନରମପନ୍ଥୀଙ୍କ ପାଖରେ ଯାହା ଦେଖୁ ତାହା ହେଉଛି ସେମାନଙ୍କର ଆଦର୍ଶ। ଅଣାଟିଏ ହାସଲ କରିବା ପାଇଁ ସେମାନେ ଲାଗି ପଡ଼ନ୍ତି ଓ ଶେଷରେ ତାହା ବି ସେମାନେ ପାଆନ୍ତିନି। ବିପ୍ଳବୀମାନେ ଏହା ସର୍ବଦା ମନେ ରଖିବା ଉଚିତ ଯେ ଅତି ନିଷ୍ଠାର ସହିତ ସେମାନେ ଏକ ସମ୍ପୂର୍ଣ୍ଣ ବିପ୍ଳବ ପାଇଁ ଚେଷ୍ଟା କରୁଛନ୍ତି। ଶତ୍ରୁଙ୍କ ହାତରେ ଥିବା କ୍ଷମତାକୁ ସମ୍ପୂର୍ଣ୍ଣ ଭାବେ ଦଖଲ କରିବା ଆମର ଲକ୍ଷ୍ୟ। ଆପୋସ୍ ନିଷ୍ପତ୍ତିକୁ ଭୟ କରାଯାଏ କାରଣ ଆପୋସ୍ ନିଷ୍ପତ୍ତି ପରେ ରକ୍ଷଣଶୀଳମାନେ ବିପ୍ଳବୀ ଶକ୍ତିକୁ ଭାଙ୍ଗି ଦେବାକୁ ଚେଷ୍ଟା କରନ୍ତି। କିନ୍ତୁ ସକ୍ଷମ ଓ ସାହସୀ ନେତାମାନେ ଏହି ଭଳିଆ ଅଘଟଣରୁ ଆନ୍ଦୋଳନକୁ ରକ୍ଷା କରି ପାରିବେ। ଏହି ଭଳି ସଙ୍କଟ କାଳରେ ଅସଲ ସମସ୍ୟାଗୁଡ଼ିକୁ ନେଇ, ବିଶେଷ କରି ଅସଲ ଲକ୍ଷ୍ୟକୁ ନେଇ ଯେପରି ଆମର ବିଚାର ବିଭ୍ରାନ୍ତି ନ

ହୁଏ ସେଥି ପ୍ରତି ସତର୍କ ରହିବାକୁ ହେବ। ବ୍ରିଟିଶ୍ ଶ୍ରମିକ ନେତାମାନେ ସେମାନଙ୍କର ମୂଳ ଲଢ଼େଇ ସହ ବିଶ୍ୱାସଘାତକତା କରିଛନ୍ତି ଏବଂ ଖସି ଯାଇଛନ୍ତି କେବଳ ନିଛକ୍ ଭଣ୍ଡ ସାମ୍ରାଜ୍ୟବାଦୀଙ୍କ ସ୍ତରକୁ। ମୋ ମତରେ ଏହି ଚିକ୍କଣ କଥାକୁହା, ଭଦ୍ର ସାମ୍ରାଜ୍ୟବାଦୀ ଶ୍ରମିକ ନେତାମାନଙ୍କ ଅପେକ୍ଷା ବଦ୍ଧମୂଳ ରକ୍ଷଣଶୀଳ ନେତାମାନେ ଆମ ପାଇଁ ଭଲ। ଯେ କେହି ଲୋକ ରଣକୌଶଳ ଓ ରଣନୀତି ସମ୍ପର୍କରେ ଜାଣିବା ପାଇଁ ଇଛା କଲେ ଲେନିନ୍‌ଙ୍କ ଜୀବନୀ ଓ ରଚ୍‌ନାବଳୀ ପଢ଼ିବା ଉଚ୍‌ିତ। ''ବାମପନ୍ଥୀ'' କମ୍ୟୁନିଜମ୍ ବହିରେ ଆପୋସ୍ ନିଷ୍ପତ୍ତି ବିଷୟରେ ତାଙ୍କର ନିର୍ଦ୍ଦିଷ୍ଟ ମତ ମିଳେ।

ମୁଁ କହିଛି ଯେ ବର୍ତ୍ତମାନର ଆନ୍ଦୋଳନ, ଅର୍ଥାତ୍ ବର୍ତ୍ତମାନର ଲଢ଼େଇ ଅନିବାର୍ଯ୍ୟ ଭାବେ କୌଣସି ନା କୌଣସି ପ୍ରକାରର ଆପୋସ୍ ନିଷ୍ପତ୍ତିରେ ସମାପ୍ତ ହେବ ଅବା ସମ୍ପୂର୍ଣ୍ଣ ରୂପେ ବିଫଳ ହେବ।

ମୁଁ ତାହା କହିଛି କାରଣ, ମୋ ମତରେ, ଏଇଥର ଅସଲ ବୈପ୍ଲବିକ ଶକ୍ତିଗୁଡ଼ିକୁ ଲଢ଼େଇର ମଇଦାନକୁ ନିମନ୍ତ୍ରଣ କରା ଯାଇନି। ଏହା ହେଉଛି ଏପରି ଏକ ଲଢ଼େଇ ଯାହା ମଧ୍ୟବିତ୍ତ ଦୋକାନଦାର ଓ ସ୍ୱଳ୍ପ ସଂଖ୍ୟକ ପୁଞ୍ଜିପତିଙ୍କ ଉପରେ ନିର୍ଭରଶୀଳ। ଉଭୟ ଗୋଷ୍ଠୀ, ବିଶେଷ କରି ପୁଞ୍ଜିପତିମାନେ ସେମାନଙ୍କ ସମ୍ପତ୍ତି ଓ ଭୋଗଦଖଲରେ ଥିବା ବିଷୟସମୁହକୁ କୌଣସି ବି ଲଢ଼େଇରେ ବାଜି ଲଗେଇବା ପାଇଁ ସାହସ କରିବେନି। ବିପ୍ଳବର ଅସଲ ଯୋଦ୍ଧାମାନେ — କୃଷକ ଓ ଶ୍ରମିକମାନେ — ରହିଛନ୍ତି ଗାଁରେ, କଳକାରଖାନାରେ। କିନ୍ତୁ ଆମ ବୁର୍ଜୁଆ ନେତାମାନେ ସେମାନଙ୍କ ସହ କୌଣସି କାରବାର କରନ୍ତିନି, କୌଣସି କାରବାର କରିବା ପାଇଁ ସାହସ କରନ୍ତିନି। ଶୋଇବା ସିଂହ ଥରେ ତା ନିଦରୁ ଉଠିଲେ ତାକୁ ଆଉ ସମ୍ଭାଳେ କିଏ? ଆମ ନେତାମାନଙ୍କର ଲକ୍ଷ୍ୟ ହାସଲ ହେବା ପରେ ମଧ୍ୟ ସେ ଆହୁରି

ଆଗକୁ ମାଡ଼ି ଯାଇପାରେ। ୧୯୨୦ ମସିହାରେ ଅହମଦାବାଦର ଶ୍ରମିକମାନଙ୍କ ମଧ୍ୟରେ ତାଙ୍କର ପ୍ରଥମ ଅଭିଜ୍ଞତା ପରେ ମହାତ୍ମା ଗାନ୍ଧି ଘୋଷଣା କଲେ, ''ଶ୍ରମିକମାନଙ୍କୁ ଆଦୌ ହାତ ଦେବାନି। କାରଖାନା ଶ୍ରମିକମାନଙ୍କୁ ରାଜନୈତିକ କାମରେ ଲଗେଇବା ଅତି ବିପଦପୂର୍ଣ୍ଣ କଥା।'' (The Times, May 1921) ତା ପରଠାରୁ ସେମାନେ କେବେହେଁ ସେମାନଙ୍କ ନିକଟକୁ ଯିବା ପାଇଁ ସାହସ କରି ନାହାଁନ୍ତି। ଆଉ ରହିଲା କୃଷକମାନଙ୍କ କଥା। ବିଶାଳ କୃଷକ ଶ୍ରେଣୀ ଏକ ବିଦେଶୀ ଜାତିର ଆଧିପତ୍ୟକୁ କାନ୍ଧରୁ ଫୋପାଡ଼ିବା ସଙ୍ଗେ ସଙ୍ଗେ ଜମିଦାରଙ୍କ ଜୁଆଳିକୁ ମଧ୍ୟ ଫୋପାଡ଼ିବା ପାଇଁ ଠିଆ ହେବା ଦେଖି ଆମ ନେତାମାନଙ୍କ ମନରେ ଯେଉଁ ଆତଙ୍କ ସୃଷ୍ଟି ହୋଇଥିଲା ତାହା ହିଁ ୧୯୨୨ ମସିହାର ବାରଦୋଲୀ ସିଦ୍ଧାନ୍ତ ସ୍ପଷ୍ଟ ରୂପେ କହେ।

ଏପରି ପରିସ୍ଥିତିରେ ହିଁ ଆମ ନେତାମାନେ କୃଷକମାନଙ୍କ ଅପେକ୍ଷା ବ୍ରିଟିଶ୍ ନିକଟରେ ଆତ୍ମସମର୍ପଣ କରିବା ପସନ୍ଦ କରନ୍ତି। ପଣ୍ଡିତ ଜବାହରଲାଲଙ୍କ କଥା ନକହିଲେ ଭଲ। କୃଷକ ଅବା ଶ୍ରମିକମାନଙ୍କୁ ସଂଗଠିତ କରିବା ପାଇଁ କୌଣସି ବି ଭାବରେ ଚେଷ୍ଟା କରିଥିବା ଜଣେ ନେତାଙ୍କୁ ଦେଖେଇ ଦେଇ ପାରିବ କି? ନା, ସେମାନେ ସେହି ବିପଦକୁ ବରଣ କରିବେନି। ସେହି ଗୁଣଟି ହିଁ ସେମାନଙ୍କ ଠାରେ ଅଭାବ। ସେହି କାରଣରୁ ହିଁ ମୁଁ କହେ ସମ୍ପୂର୍ଣ୍ଣ ବିପ୍ଳବ କେବେ ହେଁ ସେମାନଙ୍କର ଲକ୍ଷ୍ୟ ନଥିଲା। ଅର୍ଥନୈତିକ ଓ ଶାସକୀୟ ଚାପ ଜରିଆରେ ଭାରତୀୟ ପୁଞ୍ଜିପତିଙ୍କ ପାଇଁ ଆଉ କିଛି ଅଧିକ ସଂସ୍କାର, ଆଉ କିଛି ଅଧିକ ସୁବିଧା ହାସଲ କରିବା ପାଇଁ ସେମାନେ ଆଶା ବାନ୍ଧି ଥିଲେ। ତେଣୁ ମୁଁ କହେ ଏହି ଆନ୍ଦୋଳନଟି ମରିବା ପାଇଁ ହିଁ ଜନ୍ମ ହୋଇଛି। ହୁଏତ କୌଣସି ନା କୌଣସି ପ୍ରକାରର ଆପୋସ୍

ନିଷ୍ପତ୍ତି ପରେ ମରିବ ଅବା ବିନା ଆପୋସ୍ ନିଷ୍ପତ୍ତିରେ ମରିବ। ଯୁବ ରାଜନୈତିକ କର୍ମୀମାନେ ଯେଉଁମାନେ ସେମାନଙ୍କର ସମସ୍ତ ଆନ୍ତରିକତା ସହ ''ଇନ୍‌କିଲାବ୍ ଜିନ୍ଦାବାଦ'' ନାରା ଦେଉଛନ୍ତି ନିଜେ ଆନ୍ଦୋଳନକୁ ପରିଚାଳନା କରିବା ପାଇଁ ଭଲ ରୂପେ ସଂଗଠିତ ହୋଇ ନାହାଁନ୍ତି ଏବଂ ସେଥିପାଇଁ ମଧ୍ୟ ସେମାନଙ୍କ ପାଖେ ଯଥେଷ୍ଟ ଶକ୍ତି ନାହିଁ। ଅସଲରେ ଆମର ବଡ଼ ବଡ଼ ନେତାମାନେ, ସମ୍ଭବତଃ ପଣ୍ଡିତ ମୋତିଲାଲ ନେହେରୁଙ୍କ ଛଡ଼ା ଅନ୍ୟ କେହି, ନିଜ କାନ୍ଧ ଉପରକୁ କୌଣସି ବି ଦାୟିତ୍ୱ ନେବା ପାଇଁ ସାହସ କରନ୍ତିନି। ତେଣୁକରି ମଝିରେ ମଝିରେ ବିନା ସର୍ତ୍ତରେ ସେମାନେ ଗାନ୍ଧିଙ୍କ ନିକଟରେ ଆତ୍ମସମର୍ପଣ କରନ୍ତି। (ଗାନ୍ଧିଜୀ ଓ) ସେମାନଙ୍କ ମଧ୍ୟରେ ଥିବା ମତପାର୍ଥକ୍ୟ ସତ୍ତ୍ୱେ ସେମାନେ କେବେ ହେଁ ଗମ୍ଭୀରତା ସହ ତାଙ୍କର ବିରୋଧ କରନ୍ତିନି ଏବଂ ମହାତ୍ମାଙ୍କ ପାଇଁ ହିଁ ସିଦ୍ଧାନ୍ତଗୁଡ଼ିକ ଗୃହୀତ ହୋଇଥାଏ।

ଏହି ପରିସ୍ଥିତିରେ ଯେଉଁ ନିଷ୍ଠାବାନ ଯୁବ କର୍ମୀମାନେ ବିପ୍ଳବକୁ ଜରୁରି ମନେ କରନ୍ତି ସେମାନଙ୍କୁ ମୁଁ ଆହୁରି ଅଧିକ ଦୁଃଖକଷ୍ଟର ଦିନ ଆସୁଥିବା ବିଷୟରେ ସତର୍କ କରିଦେବା ପାଇଁ ଚାହେଁ। ସେମାନେ ସାବଧାନ ରହନ୍ତୁ ନଚେତ ବିଭ୍ରାନ୍ତିରେ ପଡ଼ିବେ ଅବା ହତୋତ୍ସାହ ହେବେ। ମହାନ୍ ଗାନ୍ଧିଙ୍କର ଦୁଇଟି ଲଢ଼େଇରେ ପାଇଥିବା ଅଭିଜ୍ଞତା ପରେ ଆମର ବର୍ତ୍ତମାନ ସ୍ଥିତି ସମ୍ପର୍କରେ ସ୍ପଷ୍ଟ ଧାରଣା ଗଠନ କରିବା ତଥା ଭବିଷ୍ୟତ କାର୍ଯ୍ୟକ୍ରମ ସ୍ଥିର କରିବା ପାଇଁ ଆମେ ଅଧିକ ଭଲ ସ୍ଥିତିରେ ରହିଛେ।

ବିଷୟଟିକୁ ଅତି ସରଳ ଭାବରେ କହିଦିଏ। ତୁମେମାନେ ''ଇନ୍‌କିଲାବ୍ ଜିନ୍ଦାବାଦ'' ''ବିପ୍ଳବ ଦୀର୍ଘଜୀବୀ ହେଉ''ର ନାରା ଦେଉଛ। ତାର ଅର୍ଥ ଯାହା ପ୍ରକୃତରେ ତୁମେ ସେହି ଅର୍ଥରେ ହିଁ ବୁଝୁଛ ବୋଲି ଧରି ନେଇ ମୁଁ ଯାହା କହିବା କଥା କହୁଛି। ଏସେମ୍ବ୍ଲି ବୋମା ମାମଲାରେ ଆମେ ଯେଉଁ ବିବୃତି

ଦେଇଥିଲୁ ସେଥିରେ ଦିଆ ଯାଇଥିବା ସଂଜ୍ଞା ଅନୁସାରେ ବିପ୍ଲବର ଅର୍ଥ ହେଲା ପ୍ରଚଳିତ ସମାଜ ବ୍ୟବସ୍ଥାର ସମ୍ପୂର୍ଣ୍ଣ ରୂପେ ପତନ ଘଟେଇ ତା ସ୍ଥାନରେ ସମାଜବାଦୀ ସମାଜ ବ୍ୟବସ୍ଥାର ସ୍ଥାପନ। ସେହି ଉଦ୍ଦେଶ୍ୟ ଦୃଷ୍ଟିରୁ ଆମର ଜରୁରି ଲକ୍ଷ୍ୟ ହେଲା କ୍ଷମତା ଦଖଲ। ପ୍ରକୃତରେ ରାଷ୍ଟ୍ର ବା ସରକାରୀ ଯନ୍ତ୍ର ହେଉଛି ଶାସକ ଶ୍ରେଣୀ ହାତରେ ଏକ ଅସ୍ତ୍ର, ତାର ସ୍ୱାର୍ଥର ସମ୍ପ୍ରସାରଣ ଓ ସୁରକ୍ଷା ପାଇଁ। ତାକୁ ଆମେ ଛଡ଼େଇ ନେବାକୁ ଚାହୁଁ। ତାକୁ ବ୍ୟବହାର କରି ଆମେ ଆମ ଆଦର୍ଶକୁ ବାସ୍ତବ ରୂପ ଦେବାକୁ ଚାହୁଁ। ଏକ ନୂଆ ଭିତ୍ତି ଉପରେ, ମାର୍କ୍ସବାଦର ଭିତ୍ତି ଉପରେ ସମାଜର ପୁନର୍ଗଠନ କରିବାକୁ ଚାହୁଁ। ଏହି ଲକ୍ଷ୍ୟ ପୂରଣ ପାଇଁ ଆମେ ସରକାରୀ ଯନ୍ତ୍ରକୁ ବ୍ୟବହାର କରିବା ସକାଶେ ସକ୍ଷମ ହେବା ଉଦ୍ଦେଶ୍ୟରେ ଲଢ଼େଇ କରୁଛୁ। ଆରମ୍ଭରୁ ହିଁ ଆମେମାନେ ଜନଗଣଙ୍କୁ ଶିକ୍ଷା ଦେଇ ଆମ ସାମାଜିକ କାର୍ଯ୍ୟକ୍ରମ ପାଇଁ ଏକ ଅନୁକୂଳ ବାତାବରଣ ସୃଷ୍ଟି କରିବାକୁ ହେବ। ଲଢ଼େଇ ଜରିଆରେ ଆମେ ତାଙ୍କୁ ଅତି ଉତ୍ତମ ଟ୍ରେନିଂ ଓ ଶିକ୍ଷା ଦେଇ ପାରିବା।

ଏହି ବିଷୟଗୁଡ଼ିକ ଆମ ପାଇଁ ସ୍ପଷ୍ଟ ହୋଇ ସାରିଛି, ଅର୍ଥାତ୍ ଆମର ଆଶୁ ଲକ୍ଷ୍ୟ ଓ ପରମ ଲକ୍ଷ୍ୟ ସ୍ପଷ୍ଟ ରୂପେ ଉପସ୍ଥାପିତ ହୋଇ ସାରିଛି, ବର୍ତ୍ତମାନ ଆମେ ଉପସ୍ଥିତ ଅବସ୍ଥାର ବିବେଚନା କରିବା। କୌଣସି ଅବସ୍ଥାର ବିଶ୍ଳେଷଣ କଲା ବେଳେ ଆମକୁ ସଚ୍ଚୋଟ, ସ୍ପଷ୍ଟବାଦୀ ହେବାକୁ ହେବ, ଆମ ପାଖେ ପେଷାଗତ ଦକ୍ଷତା ରହିବା ଆବଶ୍ୟକ।

ଭାରତୀୟମାନେ ଭାରତ ସରକାରରେ ଭାଗ ନେବା ପାଇଁ ଚାହୁଁଥିଲେ। ସରକାରଙ୍କର ଦାୟିତ୍ୱ ବଣ୍ଟନ ଚାହୁଁଥିଲେ। ସେଥିପାଇଁ କେତେ ହଲ୍ଲା ହୋଇଥିଲା। ଯାରି ପରିଣାମରେ ମିଣ୍ଟୋ-ମୋର୍‌ଲେ ସଂସ୍କାର ଅଣା ଯାଇଥିଲା। ଭାଇସ୍‌ରାୟଙ୍କ ପରିଷଦ ଗଠିତ ହୋଇଥିଲା। କିନ୍ତୁ ତାହାର

କେବଳ ପରାମର୍ଶ ଦେବାର ଅଧିକାର ଥିଲା, ଅନ୍ୟ କିଛି ନୁହେଁ। ଏହା ହେଲା ପ୍ରଥମ ପର୍ଯ୍ୟାୟର କଥା। ଦ୍ୱିତୀୟ ପର୍ଯ୍ୟାୟରେ, ମହାଯୁଦ୍ଧ ବେଳେ ଭାରତୀୟମାନଙ୍କ ସାହାଯ୍ୟ ନିହାତି ଆବଶ୍ୟକ ଥିଲା, ତେଣୁ ସ୍ୱାୟତ ଶାସନର ପ୍ରତିଶ୍ରୁତି ଦିଆଗଲା। ତାର ପରିଣାମ ହେଲା ବର୍ତ୍ତମାନ ପ୍ରଚଳିତ ଥିବା ସଂସ୍କାର। ଏସେମ୍ବ୍ଲିକୁ ସୀମିତ ବିଧେୟକ କ୍ଷମତା ଦିଆ ଯାଇଛି। ତାହା ପୁଣି ଭାଇସ୍‌ରାୟଙ୍କ ସଦିଚ୍ଛା ଉପରେ ନିର୍ଭର କରେ। ଏହି ସବୁ କଥା ଆମେ ଜାଣୁ। ବର୍ତ୍ତମାନଟି ହେଲା ତୃତୀୟ ପର୍ଯ୍ୟାୟ।

ବର୍ତ୍ତମାନ କଣ କଣ ସଂସ୍କାର ଅଣାଯିବ ତାର ଆଲୋଚନା ଚାଲିଛି ଓ ନିକଟ ଭବିଷ୍ୟତରେ ତାହା ପ୍ରଚଳନ କରାଯିବ। ଆମର ତରୁଣମାନେ ସେଗୁଡ଼ିକର ବିଚାର କିପରି କରିବେ? ସେଇଟା ହିଁ ପ୍ରଶ୍ନ। ମୁଁ ଜାଣିନି କଂଗ୍ରେସ ନେତାମାନେ କେଉଁ ମାନଦଣ୍ଡ ନେଇ ସେଗୁଡ଼ିକର ବିଚାର କରିବେ। କିନ୍ତୁ ଆମେ ବିପ୍ଳବୀମାନେ ନିମ୍ନଲିଖିତ ତିନୋଟି ମାନଦଣ୍ଡ ନେଇ ପାରିବା।

୧. କେତେ ପରିମାଣର ଦାୟିତ୍ୱ ଭାରତୀୟମାନଙ୍କ କାନ୍ଧକୁ ଦିଆ ଯାଉଛି।

୨. କେଉଁ ଧରଣର ସରକାରୀ ଅନୁଷ୍ଠାନମାନ ପ୍ରଚଳନ ହେବ ଓ ସେଗୁଡ଼ିକରେ ଜନଗଣଙ୍କର ଅଂଶଗ୍ରହଣ ଅଧିକାର କେତେ ପରିମାଣରେ ରହିବ।

୩. ଭବିଷ୍ୟତର ଆଶା ଓ ରକ୍ଷା କବଚ।

ଏଗୁଡ଼ିକୁ ଟିକିଏ ପ୍ରାଞ୍ଜଳ ଭାବରେ କହିବା ଆବଶ୍ୟକତା ରହିଛି। ପ୍ରଥମେ, ଆମ ଲୋକଙ୍କୁ କେତେ ଦାୟିତ୍ୱ ଦିଆଗଲା ତାହା ସହଜରେ ଜାଣି ହେବ। କାର୍ଯ୍ୟପାଳକ (executive) ବା ଶାସକମାନଙ୍କୁ ଆମ ପ୍ରତିନିଧିମାନେ କେତେ ଦୂର ନିୟନ୍ତ୍ରଣ କରି ପାରିବେ, ତାହା ହିଁ ସ୍ଥିର କରିବ ଲୋକଙ୍କୁ କେତେ

ଦାୟିତ୍ୱ ଦିଆଗଲା। ଆଜି ପର୍ଯ୍ୟନ୍ତ ଶାସକବର୍ଗ ବିଧାନସଭା ନିକଟରେ ଉତ୍ତରଦାୟୀ ନଥିଲେ ଓ ଭାଇସ୍‌ରାୟଙ୍କ ନିକଟରେ ଭିଟୋ ପାୱାର ବା ନାକଚ୍ କରିବା କ୍ଷମତା ଥିଲା, ଯାହା ନିର୍ବାଚିତ ପ୍ରତିନିଧିମାନଙ୍କର ସମସ୍ତ ଚେଷ୍ଟାକୁ ବ୍ୟର୍ଥ କରି ଦେଉଥିଲା। ସ୍ୱରାଜ୍ୟ ପାର୍ଟିର ଆନ୍ତରିକ ଉଦ୍ୟମ ପାଇଁ ଧନ୍ୟବାଦ, ଯାରି ଫଳରେ ଭାଇସ୍‌ରାୟ ମଝିରେ ମଝିରେ ଏହି ଅସାଧାରଣ କ୍ଷମତା ବ୍ୟବହାର କରି ଅତି ନିର୍ଲ୍ଲଜ ଭାବରେ ଜାତୀୟ ପ୍ରତିନିଧିମାନଙ୍କର ଗୁରୁତ୍ୱପୂର୍ଣ୍ଣ ନିଷ୍ପତ୍ତିଗୁଡ଼ିକୁ ପଦଦଳିତ କରିବା ପାଇଁ ବାଧ ହେଉଥିଲେ। ଏହି ବିଷୟଟି ଏତେ ଜଣାଶୁଣା ଯେ ତାର ଆଉ ଅଧିକ ଆଲୋଚ଼ନା ଆବଶ୍ୟକ କରେନା।

ବର୍ତ୍ତମାନ ଆମେ ପ୍ରଥମେ କାର୍ଯ୍ୟପାଳିକା (executive) ଗଠନର ଧାରା ଦେଖିବା କଥା: କାର୍ଯ୍ୟପାଳିକାଟି ଜନସମର୍ଥୀତ ବିଧାନ ସଭାର ପ୍ରତିନିଧିମାନଙ୍କ ଦ୍ୱାରା ନିର୍ବାଚ଼ିତ ହେବ ନା ପୂର୍ବ ଭଳି ଉପରୁ ଲଦି ଦିଆଯିବ? ପୁଣି ଦେଖିବାକୁ ହେବ: ତାହା ବିଧାନ ସଭା ନିକଟରେ ଉତ୍ତରଦାୟୀ ରହିବ ନା ପୂର୍ବ ଭଳି ତାର ଖୁଲ୍ଲମ୍‌ଖୁଲା ଅପମାନ କରିବ?

ଦ୍ୱିତୀୟ ମାନଦଣ୍ଡ ସମ୍ପର୍କରେ ଏହା କୁହାଯାଇ ପାରେ ଯେ ଭୋଟାଧୀକାରର ପରିସରରୁ ଆମେ ତାର ବିଚ଼ାର କରି ପାରିବା। ଜଣେ ବ୍ୟକ୍ତି ଭୋଟ ଦେବା ପାଇଁ ଯୋଗ୍ୟ ବିବେଚ଼ିତ ହେବା ନିମନ୍ତେ ଏକ ନିର୍ଦ୍ଦିଷ୍ଟ ପରିମାଣର ସମ୍ପତ୍ତିର ଅଧିକାରୀ ହୋଇଥିବା ଜରୁରି ଭଳି ସର୍ତ୍ତକୁ ସମ୍ପୂର୍ଣ୍ଣ ରୂପେ ଉଠେଇ ଦିଆଯିବା ଆବଶ୍ୟକ ଓ ତା ପରିବର୍ତ୍ତେ ସାର୍ବଜନୀନ ଭୋଟାଧୀକାର ପ୍ରଚ଼ଳନ ହେବା ଆବଶ୍ୟକ। ସମସ୍ତ ପ୍ରାପ୍ତ ବୟସ୍କ ପୁରୁଷ ଓ ମହିଳାଙ୍କର ଭୋଟ ଅଧୀକାର ରହିବା ଆବଶ୍ୟକ। ଭୋଟାଧୀକାରର

ପରିସରକୁ କେତେ ବିସ୍ତାରିତ କରାଯାଇଛି, କେବଳ ତାହା ହିଁ ଆମେ ବର୍ତ୍ତମାନ ଦେଖିବା କଥା।

ଆକାର ଦୃଷ୍ଟିରୁ ଦେଖିବାକୁ ଗଲେ, ଆମର ବର୍ତ୍ତମାନ ଦ୍ୱି-ସଦନୀୟ ସରକାର ଚାଲିଛି। ମୋ ମତରେ ଉପର ସଦନଟି ହେଉଛି ଏକ ବୁର୍ଜୁଆ କୁସଂସ୍କାର ଅବା ଫାନ୍ଦ। ତେଣୁ ଏକ-ସଦନୀୟ ସରକାର ହେଉଛି ଏକ ମାତ୍ର ଭଲ ସରକାର ଯାହା ଆମେ ଆଶା କରିପାରୁ।

ପ୍ରାଦେଶିକ ସ୍ୱାୟତ ଶାସନ ସମ୍ପର୍କରେ ମୁଁ କିଛି ସୂଚିତ କରିପାରେ। ମୁଁ ଯାହା ଶୁଣିଛି ତାରି ବଳରେ କେବଳ ଏତିକି କହି ପାରେ ଯେ ବିଧାନସଭା ଉପରେ, ତାଠାରୁ ଉର୍ଦ୍ଧ୍ୱରେ ଅସାଧାରଣ କ୍ଷମତା ଥାଇ ଏକ ଗଭର୍ଣ୍ଣରଙ୍କୁ ଉପରୁ ଲଦି ଦିଆଯିବ, ଯିଏ ଜଣେ ସ୍ୱେଚ୍ଛାଚାରୀ ଠାରୁ କିଛି ବି କମ୍ ପ୍ରମାଣିତ ହେବେନି। ଆମେ ଏହାକୁ ''ପ୍ରାଦେଶିକ ସ୍ୱାୟତ ଶାସନ'' ନ କହି ''ପ୍ରାଦେଶିକ ନିରଙ୍କୁଶ ଶାସନ'' କହିଲେ ଭଲ ହେବ। ରାଷ୍ଟ୍ରୀୟ ଅନୁଷ୍ଠାନଟିର ଏହା ହେଉଛି ଏକ କିମ୍ଭୂତକିମାକାର ଧରଣର ଗଣତନ୍ତ୍ରୀକରଣ।

ତୃତୀୟ ବିଷୟଟି ଅତି ସ୍ପଷ୍ଟ। ବ୍ରିଟିଶ୍ ରାଜକୋଷ ସରିବା ପର୍ଯ୍ୟନ୍ତ ପ୍ରତି ଦଶ ବର୍ଷରେ ମୁଠିଏ ମୁଠିଏ ସଂସ୍କାର ଭିକ୍ଷା ଦେବେ ବୋଲି ମୋଣ୍ଟାଗୁଙ୍କ ପ୍ରତିଶ୍ରୁତିକୁ ଟାଳି ଦେବା ପାଇଁ ଗତ ଦୁଇ ବର୍ଷ ଧରି ବ୍ରିଟିଶ୍ ରାଜନିତିଜ୍ଞମାନେ ଚେଷ୍ଟା କରି ଆସୁଛନ୍ତି।

ଭବିଷ୍ୟତ ସମ୍ପର୍କରେ କଣ ସବୁ ନିଷ୍ପତ୍ତି ସେମାନେ କରିଛନ୍ତି ତାହା ଆମେ ଦେଖି ପାରୁଛେ।

ମୁଁ ଏହା ସ୍ପଷ୍ଟ ଭାବେ କହି ଦେବାକୁ ଚାହେଁ ଯେ କୌଣସି ସଫଳତାକୁ ନେଇ ଆନନ୍ଦିତ ହେବା ଅଭିପ୍ରାୟରେ ଏହି ବିଷୟଗୁଡ଼ିକର ବିଶ୍ଳେଷଣ ଆମେମାନେ କରୁନେ। ଆମେମାନେ ଏହି ବିଶ୍ଳେଷଣ କରୁଛେ ଆମ ନିଜର

ସ୍ଥିତି ସମ୍ପର୍କରେ ଏକ ସ୍ପଷ୍ଟ ଧାରଣା ଗଢ଼ି ତୋଳିବା ପାଇଁ। ଯାହା ଆମେ ଜନଗଣଙ୍କୁ ଜଣେଇବା, ଯାରି ଭିତ୍ତିରେ ଆମେ ସେମାନଙ୍କୁ ଭବିଷ୍ୟତର ଲଢ଼େଇ ପାଇଁ ପ୍ରସ୍ତୁତ କରିବା। ଆପୋସ୍ ନିଷ୍ପତ୍ତିର ମାନେ ଆମ ପାଇଁ କେବେହେଁ ଆତ୍ମସମର୍ପଣ ନୁହେଁ। ଆମ ପାଇଁ ତାର ମାନେ ହେଲା ପାଦେ ଆଗକୁ ଯିବା ଓ ଟିକିଏ ବିଶ୍ରାମ କରିବା। ତାହା ହିଁ ତାର ଅର୍ଥ, ଅନ୍ୟ କିଛି ନୁହେଁ। ଆପୋସ୍ ନିଷ୍ପତ୍ତି ହିଁ ଅନ୍ତିମ ଲକ୍ଷ୍ୟ ନୁହେଁ, ଅନ୍ତିମ ବିଶ୍ରାମର ସ୍ଥଳ ନୁହେଁ।

ଉପସ୍ଥିତ ପରିସ୍ଥିତି ସମ୍ପର୍କରେ ଆଲୋଚନା ସରିଛି। ଆମେ ବର୍ତ୍ତମାନ ଆମର ଭବିଷ୍ୟତ କାର୍ଯ୍ୟକ୍ରମ ଓ କେଉଁ ଧାରାରେ ଆମେମାନେ କାର୍ଯ୍ୟ କରିବା ଉଚିତ ତାରି ସମ୍ପର୍କରେ ଆଲୋଚନା କରିବା।

ଯେ କୌଣସି ବିପ୍ଳବୀ ଦଳ ପାଇଁ ଏକ ନିର୍ଦ୍ଦିଷ୍ଟ କାର୍ଯ୍ୟକ୍ରମ ନିହାତି ଜରୁରି ବୋଲି ମୁଁ ଆଗରୁ କହି ସାରିଛି। କାରଣ ତୁମେମାନେ ଏହା ଜାଣିବା ନିହାତି ଜରୁରି ଯେ ବିପ୍ଳବ ମାନେ ହିଁ ସଂଗଠିତ ଓ ବ୍ୟବସ୍ଥିତ କାର୍ଯ୍ୟ ଯାରି ସାହାଯ୍ୟରେ ଇଚ୍ଛାକୃତ ପରିବର୍ତ୍ତନ କରିହେବ। ଏହି ଧରଣର ପରିବର୍ତ୍ତନ ଆକସ୍ମିକ ଓ ଅସଂଗଠିତ ଅବା ସ୍ୱତଃସ୍ଫୂର୍ତ୍ତ ପରିବର୍ତ୍ତନର ବିରୋଧ କରେ, ବିଘଟନର ବିରୋଧ କରେ। କାର୍ଯ୍ୟକ୍ରମର ନିର୍ଦ୍ଧାରଣ ପାଇଁ ନିମ୍ନରେ ଦିଆ ଯାଇଥିବା ବିଷୟଗୁଡ଼ିକର ଅଧ୍ୟୟନ, ଅନୁଧ୍ୟାନ କରିବା ଏକାନ୍ତ ଜରୁରି:

୧. ଲକ୍ଷ୍ୟ ବା ଉଦ୍ଦେଶ୍ୟ।

୨. କେଉଁ ଅବସ୍ଥାରୁ ଆମେ ଆଗକୁ ଯିବା? ଅର୍ଥାତ୍ ବର୍ତ୍ତମାନ ପରିସ୍ଥିତି କଣ?

୩. କାର୍ଯ୍ୟଧାରା, ଅର୍ଥାତ୍ ମାଧ୍ୟମ ଓ ପଦ୍ଧତି।

ଏହି ତିନୋଟି ଉପାଦାନ ସମ୍ପର୍କରେ ସ୍ପଷ୍ଟ ଧାରଣା ନ ରହିଲେ, କାର୍ଯ୍ୟକ୍ରମ ସମ୍ପର୍କରେ କୌଣସି ବି ଆଲୋଚନା କରି ହେବନି।

ବର୍ତ୍ତମାନ ପରିସ୍ଥିତି ସମ୍ପର୍କରେ କେତେକ ଆଲୋଚନା ସରିଛି। ଲକ୍ଷ୍ୟ ସମ୍ପର୍କରେ ମଧ୍ୟ ସଂକ୍ଷେପରେ କିଛି କହିଛି। ଆମେମାନେ ଏକ ସମାଜବାଦୀ ବିପ୍ଳବ ଚାହୁଁ, ଯାହା ପାଇଁ ରାଜନୈତିକ ବିପ୍ଳବ ହେଉଛି ଏକ ଅନିବାର୍ଯ୍ୟ ପ୍ରାଥମିକ ଆବଶ୍ୟକତା। ତାହା ହିଁ ଆମେ ଚାହୁଁ। ରାଜନୈତିକ ବିପ୍ଳବ କହିଲେ ବ୍ରିଟିଶ୍‌ମାନଙ୍କ ହାତରୁ ଭାରତୀୟମାନଙ୍କ ହାତକୁ ରାଷ୍ଟ୍ରର (ଆହୁରି ସ୍ଥୂଳ ଭାଷାରେ କହିଲେ, କ୍ଷମତାର) ହସ୍ତାନ୍ତର ବୁଝାଏନା। ରାଜନୈତିକ ବିପ୍ଳବ କହିଲେ ବୁଝାଏ କ୍ଷମତାର ହସ୍ତାନ୍ତର କେବଳ ସେହି ଭାରତୀୟମାନଙ୍କ ହାତକୁ ଯେଉଁମାନେ ଆମର ଅନ୍ତିମ ଲକ୍ଷ୍ୟ ସହ ଏକମତ। ଆହୁରି ନିର୍ଦ୍ଦିଷ୍ଟ ଭାବରେ କହିଲେ, ଜନ ସମର୍ଥନ ଜରିଆରେ ବିପ୍ଳବୀ ପାର୍ଟିକୁ କ୍ଷମତାର ହସ୍ତାନ୍ତର। ତା ପରେ ସମାଜବାଦୀ ଭିତ୍ତିରେ ସମଗ୍ର ସମାଜର ପୁନର୍ଗଠନ ସଂଗଠିତ ମାର୍ଗରେ କରିବା ପାଇଁ ସଠିକ୍ ଆନ୍ତରୀକତା ସହ ଆଗେଇବାକୁ ହେବ। ଯଦି ବିପ୍ଳବର ମାନେ ତୁମ ପାଇଁ ଏୟା ନୁହେଁ, ତେବେ ଦୟାକରି ଆମ ଉପରେ କୃପା କର। ''ଇନ୍‌କିଲାବ୍ ଜିନ୍ଦାବାଦ'', ''ବିପ୍ଳବ ଜିନ୍ଦାବାଦ'' ରଡ଼ି ଛାଡ଼ିବା ବନ୍ଦ କର। ବିପ୍ଳବ ପଦଟି ଅନ୍ତତଃ ପକ୍ଷେ ଆମ ପାଇଁ ଅତି ପବିତ୍ର। ତେଣୁ ଏହାର ଉପରଠାଉରିଆ ବ୍ୟବହାର ଅବା ଅପବ୍ୟବହାର ବନ୍ଦ କର। କିନ୍ତୁ ଯଦି ତୁମେ କୁହ ଜାତୀୟ ବିପ୍ଳବ ପାଇଁ ତୁମେ ସଂଗ୍ରାମ କରୁଛ ଏବଂ ତୁମ ସଂଗ୍ରାମର ଲକ୍ଷ୍ୟ ହେଉଛି ଯୁକ୍ତରାଷ୍ଟ୍ର ଆମେରୀକା ଭଳି ଏକ ଭାରତୀୟ ସାଧାରଣତନ୍ତ୍ର ରାଷ୍ଟ୍ର, ତେବେ ମୁଁ ତୁମକୁ ପଚାରୁଛି ଦୟାକରି ମୋତେ କୁହ ସେହି ବିପ୍ଳବରେ ସହାୟତା କରିବା ପାଇଁ କେଉଁ କେଉଁ ଶକ୍ତିଗୁଡ଼ିକ ଉପରେ ତୁମେ ନିର୍ଭର କରୁଛ। ଜାତୀୟ ବିପ୍ଳବ ହେଉ ଅବା ସମାଜବାଦୀ ବିପ୍ଳବ ହେଉ

ଯେଉଁ ଶକ୍ତିମାନଙ୍କ ଉପରେ ତୁମେ ନିର୍ଭର କରି ପାରିବ ସେମାନେ ହେଲେ କେବଳ କୃଷକ ଓ ଶ୍ରମିକ। କଂଗ୍ରେସ ନେତାମାନେ ଏହି ଶକ୍ତିମାନଙ୍କୁ ସଂଗଠିତ କରିବା ପାଇଁ ସାହସ କରନ୍ତିନି। ତାହା ତୁମେ ଏହି ଆନ୍ଦୋଳନରେ ଦେଖିଛ। ଅନ୍ୟମାନଙ୍କ ଅପେକ୍ଷା ସେମାନେ ଏହା ମଧ୍ୟ ଭଲ କରି ଜାଣନ୍ତି ଯେ ଏହି ଶକ୍ତିମାନଙ୍କ ବିନା ସହାୟତାରେ ସେମାନେ ନିହାତି ଅସହାୟ। ଯେତେବେଳେ ସେମାନେ ପୂର୍ଣ୍ଣ ସ୍ୱରାଜ — ଯାହାର ବାସ୍ତବ ଅର୍ଥ ଥିଲା ବିପ୍ଳବ — ପାଇଁ ପ୍ରସ୍ତାବ ଗ୍ରହଣ କଲେ, ସେମାନେ ତାକୁ ସେହି ବାସ୍ତବ ଅର୍ଥରେ ବୁଝୁ ନଥିଲେ। ଯୁବ ପିଢ଼ିର ଚାପରେ ପଡ଼ି ସେମାନେ ତାହା କରିବା ପାଇଁ ବାଧ୍ୟ ହୋଇଥିଲେ ଏବଂ ତାକୁ ମଧ୍ୟ ଏକ ଧମକ ହିସାବରେ ବ୍ୟବହାର କରିବା ପାଇଁ ସେମାନେ ଚାହିଁଥିଲେ ସେମାନଙ୍କ ହୃଦୟର ଆକାଂକ୍ଷିତ ଡୋମିନିୟନ୍ ସ୍ଥିତି ପାଇବା ପାଇଁ। କଂଗ୍ରେସର ଶେଷ ତିନୋଟି ଅଧିବେଶନର ପ୍ରସ୍ତାବଗୁଡ଼ିକୁ ଅନୁଧ୍ୟାନ କଲେ ତୁମେ ତାହା ସହଜରେ ବୁଝି ପାରିବ। ମୁଁ ମାନ୍ଦ୍ରାସ, କଲିକତା ଓ ଲାହୋର ଅଧିବେଶନର ପ୍ରସ୍ତାବଗୁଡ଼ିକ କଥା କହୁଛି। ବାର ମାସ ମଧ୍ୟରେ ଡୋମିନିୟନ ସ୍ଥିତି ନପାଇଲେ ପୂର୍ଣ୍ଣ ସ୍ୱରାଜକୁ ସେମାନଙ୍କର ଲକ୍ଷ୍ୟ ହିସାବରେ ଗ୍ରହଣ କରିବା ପାଇଁ ବାଧ୍ୟ ହେବେ ବୋଲି କଲିକତାରେ ଏକ ପ୍ରସ୍ତାବ ଗ୍ରହଣ କଲେ। ଏବଂ ୧୯୨୯ ମସିହା ଡିସେମ୍ବର ୩୧ ର ମଧ୍ୟ ରାତ୍ରି ପର୍ଯ୍ୟନ୍ତ ସେହି ଭଳିଆ କିଛି ଉପହାର ମିଳିବା ଆଶାରେ ସମସ୍ତ ପବିତ୍ରତା ସହ ଅପେକ୍ଷା କଲେ। ତା ପରେ ସେମାନେ ''ଆତ୍ମସମ୍ମାନ ଦୃଷ୍ଟିରୁ ବାଧ୍ୟ ହେଲେ'' ସ୍ୱାଧୀନତା ପ୍ରସ୍ତାବ ଗ୍ରହଣ କରିବା ପାଇଁ, ନଚେତ୍ ତାହା ସେମାନଙ୍କର ଉଦ୍ଦେଶ୍ୟ କେବେ ହେଁ ନଥିଲା। ତା ପରେ ବି (ରାଜିନାମା ପାଇଁ) ଦ୍ୱାର ଖୋଲା ଥିବା ବିଷୟକୁ ଗାନ୍ଧିଜୀ କେବେ ଗୁପ୍ତ ରଖି ନଥିଲେ। ସେଇଟା ହିଁ ତାହାର ବାସ୍ତବ ତାତ୍ପର୍ଯ୍ୟ। ଆରମ୍ଭରୁ ସେମାନେ ଜାଣି

ଥିଲେ ଯେ ସେମାନଙ୍କର ଆନ୍ଦୋଳନ କୌଣସି ନା କୌଣସି ଆପୋସ୍ ନିଷ୍ପତ୍ତିରେ ହିଁ ସମାପ୍ତି ଘଟିବ। ଏହି ଦରପନ୍ତରା ମନୋଭାବକୁ ହିଁ ଆମେ ଘୃଣା କରୁ, ସଂଗ୍ରାମ କାଳରେ କୌଣସି ଏକ ସ୍ତରରେ ହୋଇଥିବା ରାଜିନାମାକୁ ନୁହେଁ। ଯାହା ହେଉ, ଏକ ବିପ୍ଳବ ପାଇଁ ଯେଉଁ ଶକ୍ତିଗୁଡ଼ିକ ଉପରେ ତୁମେ ନିର୍ଭର କରି ପାରିବ ଆମେ ତାରି ସମ୍ପର୍କରେ ଆଲୋଚନା କରୁଥିଲେ। ତୁମେ ଯଦି କୁହ କୃଷକ ଓ ଶ୍ରମିକମାନଙ୍କର ସକ୍ରିୟ ସହଯୋଗ ପାଇବା ପାଇଁ ତୁମେ ସେମାନଙ୍କ ନିକଟକୁ ଯିବ, ତେବେ ମୁଁ କହିଦିଏ କୌଣସି ପ୍ରକାର ଲୁହଝରା କଥାରେ ଠକି ହେବା ଲୋକ ସେମାନେ ନୁହଁନ୍ତି। ଅତି ସଙ୍କୋଟ ଭାବରେ ସେମାନେ ତୁମକୁ ପଚାରିବେ: ତୁମ ବିପ୍ଳବ ଦ୍ୱାରା ସେମାନଙ୍କର କଣ ଲାଭ ହେବ? ସେମାନେ କାହିଁକି ବିପ୍ଳବ ମଧ୍ୟକୁ ଝାସ ଦେବେ? ଲର୍ଡ଼ ରିଡିଙ୍ଗ୍ ଭାରତ ସରକାରଙ୍କର ମୁଖ୍ୟ ହୁଅନ୍ତୁ ବା ସାର୍ ପୁରୁଷୋତ୍ତମଦାସ ଠାକୁରଦାସ, ତାଙ୍କ ପାଇଁ କଣ ଫରକ ପଡ଼ିବ? ଲର୍ଡ଼ ଇର୍‌ୱିନ୍‌ଙ୍କ ଚଉକିରେ ସାର୍ ତେଜ୍ ବାହାଦୁର ସପ୍ରୁ ବସିଲେ ଜଣେ ଚାଷୀ ପାଇଁ କଣ ଫରକ ପଡ଼ିବ? ତାର ଜାତୀୟ ଭାବପ୍ରବଣତାକୁ ନିବେଦନ କରି କିଛି ଲାଭ ନାହିଁ। ତୁମେ ତୁମ ଉଦ୍ଦେଶ୍ୟରେ ତାକୁ "ବ୍ୟବହାର" କରି ପାରିବନି। ଅତି ଗମ୍ଭିରତାର ସହ ତାକୁ ବୁଝେଇବାକୁ ହେବ ଏବଂ ସେ ଏହା ଭଲ ଭାବେ ବୁଝିବା ଆବଶ୍ୟକ ଯେ ବିପ୍ଳବଟି ହେବ ତାର ଓ ତାରି ଭଲ ପାଇଁ। — ଶ୍ରମିକ ଶ୍ରେଣୀର ବିପ୍ଳବ ଓ ଶ୍ରମିକ ଶ୍ରେଣୀ ପାଇଁ।

ତୁମର ଲକ୍ଷ୍ୟ ସମ୍ପର୍କରେ ଏହି ଭାବର ସ୍ୱଷ୍ଟ ଧାରଣା ଗଠନ କରି ସାରିବା ପରେ ତୁମେ ନିହାତି ସଙ୍କୋଟ ଭାବରେ ଏଇ ଭଳିଆ ଏକ କାମ ପାଇଁ ତୁମ ଶକ୍ତିକୁ ସଂଗଠିତ କରିବା ପାଇଁ ଆଗଭର ହେବ। ବର୍ତ୍ତମାନ ଦୁଇଟି

ପର୍ଯ୍ୟାୟ ରହିଛି ଯାହା ମଧ୍ୟ ଦେଇ ତୁମକୁ ଗତି କରିବାକୁ ପଡ଼ିବ। ପ୍ରଥମ ପର୍ଯ୍ୟାୟରେ ପ୍ରସ୍ତୁତି, ଦ୍ୱିତୀୟରେ କାର୍ଯ୍ୟ।

ବର୍ତ୍ତମାନ ଚାଲୁଥିବା ଏହି ଆନ୍ଦୋଳନର ସମାପ୍ତି ଘଟିବା ପରେ, ପ୍ରକୃତ ବିପ୍ଲବୀ କର୍ମୀମାନଙ୍କ ମଧ୍ୟରେ ତୁମେ ଦେଖିବ ବିରକ୍ତିଭାବ, ନୈରାଶ୍ୟଭାବ। କିନ୍ତୁ ସେଥିରେ ତୁମର ବ୍ୟସ୍ତ ହେବାର କିଛି ନାହିଁ। ଭାବପ୍ରବଣତାକୁ ଆଡ଼େଇ ରଖ। ବାସ୍ତବତାକୁ ସାମନା କରିବା ପାଇଁ ପ୍ରସ୍ତୁତ ରୁହ। ବିପ୍ଲବ ହେଉଛି ଏକ ଅତି କଷ୍ଟ କାର୍ଯ୍ୟ। ବିପ୍ଲବଟିଏ ସଂଗଠିତ କରିବା କାର୍ଯ୍ୟ ଯେକୌଣସି ଏକ ବ୍ୟକ୍ତିର ଶକ୍ତିର ବାହାରେ। ଆଗରୁ ନିଷ୍ପତ୍ତି କରି କୌଣସି ଏକ ନିର୍ଦ୍ଦିଷ୍ଟ ଦିନରେ ମଧ୍ୟ ତାହା କରି ହେବନି। ବିଶେଷ ଧରଣର ସାମାଜିକ ଓ ଅର୍ଥନୈତିକ ପରିବେଶ ସେହି ସୁଯୋଗ ସୃଷ୍ଟି କରେ। ଏହି ପରିବେଶଗୁଡ଼ିକ ଦ୍ୱାରା ଦିଆ ଯାଉଥିବା ସୁଯୋଗର ସଦୁପଯୋଗ କରିବା ହେଲା ଏକ ସଂଗଠିତ ପାର୍ଟିର ଦାୟିତ୍ୱ। ବିପ୍ଲବ ପାଇଁ ଜନଗଣଙ୍କୁ ପ୍ରସ୍ତୁତ କରିବା ଓ ଶକ୍ତିଗୁଡ଼ିକୁ ସଂଗଠିତ କରିବା ହେଉଛି ଏକ କଠିନ କାର୍ଯ୍ୟ। ଏବଂ ସେଥିପାଇଁ ବିପ୍ଲବୀ କର୍ମୀମାନଙ୍କ ତରଫରୁ ବହୁତ କିଛି ଉତ୍ସର୍ଗ କରିବାକୁ ପଡ଼ିଥାଏ। ମୁଁ ସ୍ପଷ୍ଟ ରୂପେ ଏହା କହିବାକୁ ଚାହେଁ ଯେ ତୁମେ ଯଦି ଜଣେ ବ୍ୟବସାୟୀ, ତୁମେ ଯଦି ପରିବାର ଅବା ବିଷୟସୁଖରେ ବୁଡ଼ି ରହିଛ, ତେବେ ଦୟାକରି ନିଆଁ ସହିତ ଖେଳ ନାହିଁ। ଜଣେ ନେତା ହିସାବରେ ତୁମେ ପାର୍ଟିର କୌଣସି କାମରେ ଆସିବନି। ଏହି ଭଳିଆ ନେତା ଆମ ପାଖେ ଅନେକ ଅଛନ୍ତି ଯେଉଁମାନେ କେତେକ ସନ୍ଧ୍ୟା ଖାଲି ରଖନ୍ତି ଭାଷଣ ଦେବା ପାଇଁ। ସେମାନଙ୍କ ଦ୍ୱାରା କିଛି ହେବନି। ଆମର ଦରକାର — ଲେନିନଙ୍କ ପ୍ରିୟ ଭାଷାରେ କହିଲେ — ''ପେଷାଦାର ବିପ୍ଲବୀ''। ସଦା-ସମୟୀ କର୍ମୀ ଯେଉଁମାନଙ୍କର ବିପ୍ଲବ ଛଡ଼ା ଅନ୍ୟ କୌଣସି ଇଚ୍ଛା ନାହିଁ, ବିପ୍ଲବ ଛଡ଼ା ଜୀବନରେ ଅନ୍ୟ କୌଣସି କାମ ନାହିଁ। ଏହି ଭଳିଆ

କର୍ମୀ ପାର୍ଟି ଭିତରେ ଯେତେ ଅଧିକ ସଂଖ୍ୟାରେ ସଂଗଠିତ ହେବେ, ତୁମ ସଫଳତାର ସମ୍ଭାବନା ସେତେ ବେଶି।

ସୁଶୃଙ୍ଖଳ ଭାବେ ଆଗେଇବାକୁ ହେଲେ, ତୁମର ସବୁଠାରୁ ବଳି ଆବଶ୍ୟକ ହେଉଛି ଏକ ପାର୍ଟି। ସେଥିରେ ସେହି ଧରଣର କର୍ମୀ ରହିବେ ଯେଉଁ ଧରଣର କର୍ମୀ କଥା ପୂର୍ବରୁ ଆଲୋଚିତ ହୋଇ ସାରିଛି। କର୍ମୀମାନଙ୍କର ସ୍ପଷ୍ଟ ଧାରଣା ରହିଥିବ, ତୀକ୍ଷ୍ଣ ଅନୁଭବ ଶକ୍ତି ଥିବ, ନେତୃତ୍ୱ ଦେଇ କୌଣସି କାର୍ଯ୍ୟ ଆରମ୍ଭ କରିବା ପାଇଁ ସାମର୍ଥ୍ୟ ଥିବ ତଥା ଶୀଘ୍ର ନିଷ୍ପତ୍ତି ନେବା ପାଇଁ କ୍ଷମତା ଥିବ। ପାର୍ଟି ମଧ୍ୟରେ ଦୃଢ଼ ଶୃଙ୍ଖଳା ରହିବ। ଅନାବଶ୍ୟକ ଭାବେ ଏହା ଏକ ଗୁପ୍ତ ପାର୍ଟି ହେବା ଉଚିତ ନୁହେଁ। ବରଂ ତାର ବିପରୀତ। ଅଥଚ ସ୍ୱେଚ୍ଛାକୃତ ଭାବେ ଜେଲ୍‌କୁ ଯିବା ନୀତିକୁ ସମ୍ପୂର୍ଣ୍ଣ ରୂପେ ପରିହାର କରାଯିବା ଉଚିତ। ତଦ୍ୱାରା କେତେକ କର୍ମୀ ଅଜ୍ଞାତବାସରେ ରହିବାକୁ ବାଧ୍ୟ ହେବେ। ସେମାନେ କାମକୁ ପୂର୍ବଭଳି ଆନ୍ତରୀକତା ସହ ଆଗକୁ କଢ଼େଇ ନେବା ଉଚିତ। କର୍ମୀମାନଙ୍କର ଏହି ଗୋଷ୍ଠୀ ହିଁ ଅସଲ ମୌକା ପାଇଁ ଯୋଗ୍ୟ ନେତା ଜାତ କରିବ।

ପାର୍ଟି ପାଇଁ ଦରକାର କର୍ମୀ, କାର୍ଯ୍ୟକର୍ତ୍ତା। ସେମାନେ କେବଳ ଯୁବ ଆନ୍ଦୋଳନ ମଧ୍ୟ ଦେଇ ବଛାଯାଇ ପାରିବେ। ତେଣୁ ଯୁବ ଆନ୍ଦୋଳନରେ ଆମ କାର୍ଯ୍ୟକ୍ରମର ପ୍ରାରମ୍ଭ ବିନ୍ଦୁ ଆମେ ଦେଖୁ। ଏହି ଯୁବ ଆନ୍ଦୋଳନର କର୍ତ୍ତବ୍ୟଗୁଡ଼ିକ ମଧ୍ୟରେ ରହିବ ପାଠଚକ୍ର ସଂଗଠିତ କରିବା, ଶ୍ରେଣୀ ବକ୍ତୃତାର ବ୍ୟବସ୍ଥା କରିବା, ପ୍ରଚାରପତ୍ର, ପୁସ୍ତିକା, ବହି ଓ ପତ୍ରପତ୍ରିକା ପ୍ରକାଶନ କରିବା। ରାଜନୈତିକ କର୍ମୀ ବାଛିବା ଓ ଟ୍ରେନିଂ ଦେବା ପାଇଁ ଏହା ହିଁ ପ୍ରକୃଷ୍ଟ କ୍ଷେତ୍ର।

ଯୁବକମାନଙ୍କ ମଧ୍ୟରୁ ଯେଉଁମାନଙ୍କର ଚିନ୍ତାଧାରା ପରିପକ୍ୱ ହୋଇ ସାରିଥିବ ଓ ଯେଉଁମାନେ ଏହି ଉଦ୍ଦେଶ୍ୟ ହାସଲ ପାଇଁ ନିଜନିଜର ଜୀବନକୁ ଉତ୍ସର୍ଗ କରିଦେବା ପାଇଁ ପ୍ରସ୍ତୁତ ଥିବେ, ସେମାନଙ୍କୁ ପାର୍ଟି ମଧ୍ୟକୁ ଅଣାଯାଇ ପାରେ। ପାର୍ଟିର କର୍ମୀମାନେ ପାର୍ଟିର ଦାୟିତ୍ୱ ସମ୍ପାଦନ କରିବା ସଙ୍ଗେ ସଙ୍ଗେ ଯୁବ ଆନ୍ଦୋଳନକୁ ସର୍ବଦା ଦିଗଦର୍ଶନ ଦେବେ ଓ ତାର କାର୍ଯ୍ୟକୁ ନିୟନ୍ତ୍ରଣ କରିବେ। ଗଣ ପ୍ରଚାର କାର୍ଯ୍ୟରୁ ହିଁ ପାର୍ଟି ତାର କାମ ଆରମ୍ଭ କରିବା ଉଚିତ। ଏହା ନିହାତି ଜରୁରି। ୧୯୧୪-୧୫ ରେ ଗଦର ପାର୍ଟିର ସମସ୍ତ ଚେଷ୍ଟା ବିଫଳ ହେବାର ମୌଳିକ କାରଣଗୁଡ଼ିକ ମଧ୍ୟରୁ ଗୋଟିଏ ଥିଲା: ଜନତାଙ୍କର ଅଜ୍ଞାନତା, ଆଗ୍ରହଶୂନ୍ୟତା ଓ ବେଳେବେଳେ ସେମାନଙ୍କର ସକ୍ରୀୟ ପ୍ରତିରୋଧ। ତା ଛଡ଼ା, କୃଷକ ଓ ଶ୍ରମିକମାନଙ୍କର ସକ୍ରୀୟ ସହାନୁଭୂତି ହାସଲ କରିବା ଓ ସେମାନଙ୍କୁ ସଂଗଠିତ କରିବା ନିହାତି ଜରୁରି। ପାର୍ଟିର ନାମଟି [ସମାଜବାଦୀ ପାର୍ଟି, କାହିଁକି[୨]] ବରଂ କମ୍ୟୁନିଷ୍ଟ ପାର୍ଟି ଦିଆ ଯାଇପାରେ। କଠୋର ଶୃଙ୍ଖଳା ଦ୍ୱାରା ଆବଦ୍ଧ ରାଜନୈତିକ କର୍ମୀମାନଙ୍କର ଏହି ପାର୍ଟି ଅନ୍ୟ ସମସ୍ତ ଆନ୍ଦୋଳନକୁ ପରିଚାଳନା କରିବା ଉଚିତ। କୃଷକମାନଙ୍କର ପାର୍ଟି, ଶ୍ରମିକମାନଙ୍କର ପାର୍ଟି, ଶ୍ରମିକ ୟୁନିଅନଗୁଡ଼ିକୁ ସଂଗଠିତ କରିବାକୁ ହେବ। କଂଗ୍ରେସ ଓ ତା ଦ୍ୱାରା ପ୍ରତିପାଳିତ ଅନ୍ୟାନ୍ୟ ରାଜନୈତିକ ଅନୁଷ୍ଠାନଗୁଡ଼ିକୁ କବଳିତ କରିବା ଭଳି ଦୁଃସାହସ ମଧ୍ୟ କରାଯାଇ ପାରେ। ପାର୍ଟି ଲୋକଙ୍କ ମଧ୍ୟରେ ରାଜନୈତିକ ସଚେତନତା ସୃଷ୍ଟି କରିବ। କିନ୍ତୁ କେବଳ ଜାତୀୟ ରାଜନୀତି ସମ୍ପର୍କରେ ନୁହେଁ, ଶ୍ରେଣୀ ରାଜନୀତି ସମ୍ପର୍କରେ ମଧ୍ୟ ରାଜନୈତିକ ସଚେତନତା ସୃଷ୍ଟି କରିବ। ସେହି ଉଦ୍ଦେଶ୍ୟର ସଫଳତା ପାଇଁ ପାର୍ଟି ଏକ ବିରାଟ ପ୍ରକାଶନ ଅଭିଯାନ ସଂଗଠିତ କରିବା ଉଚିତ। [ସର୍ବହରା ସମ୍ପର୍କୀତ ସମସ୍ତ ବିଷୟବସ୍ତୁ ତଥା[୩]] ସମାଜବାଦୀ ତତ୍ତ୍ୱ ସମ୍ପର୍କରେ

ଜନଗଣଙ୍କୁ ଜ୍ଞାନ ପ୍ରଦାନ କଲା ଭଳି ସମସ୍ତ ବହି ସେମାନଙ୍କ ହାତପାଆନ୍ତରେ ରହିବ ଓ ବହୁଳ ଭାବରେ ବଣ୍ଟନ କରାଯିବ। ଲେଖାଗୁଡ଼ିକ ସରଳ ଓ ସ୍ପଷ୍ଟ ହେବା ଉଚିତ।

ଶ୍ରମିକ ଆନ୍ଦୋଳନ ମଧ୍ୟରେ ଏମିତି ବି କେତେକ ଲୋକ ଅଛନ୍ତି ଯେଉଁମାନଙ୍କ ମୁଣ୍ଡରେ କିମ୍ଭୁତକିମାକାର ଚିନ୍ତାମାନ ରହିଛି। ରାଜନୈତିକ ସ୍ୱାଧୀନତା ବିନା କୃଷକ ଓ ଶ୍ରମିକମାନଙ୍କର ଅର୍ଥନୈତିକ ସ୍ୱାଧୀନତା ସମ୍ଭବ ବୋଲି ସେମାନେ କହନ୍ତି। ସେମାନେ ତୁମମାନଙ୍କର ଦୁର୍ବଳତାକୁ ପୁଞ୍ଜି କରି ପାରୁଥିବା ପ୍ରିୟ ନେତା ହୋଇଥାଇ ପାରନ୍ତି ଅବା ବିଶୃଙ୍ଖଳ ମସ୍ତିଷ୍କର ଲୋକ ହୋଇ ପାରନ୍ତି। ଏହି ଭଳିଆ ଚିନ୍ତା କଳ୍ପନାତୀତ, ଅବାନ୍ତର। ଜନଗଣଙ୍କ ଅର୍ଥନୈତିକ ସ୍ୱାଧୀନତା ଆମେ ଚାହୁଁ ଏବଂ ତାରି ପାଇଁ ହିଁ ଆମେ ରାଜନୈତିକ କ୍ଷମତା ହାସଲ କରିବା ପାଇଁ ଚେଷ୍ଟା କରୁଛୁ। ଅବଶ୍ୟ ଏହା ନିଃସନ୍ଦେହ ଯେ ଆରମ୍ଭରେ ଆମକୁ ଏହି ଶ୍ରେଣୀଗୁଡ଼ିକର କେତେକ ଅର୍ଥନୈତିକ ଦାବୀ ଓ ସୁଖସୁବିଧା ପାଇଁ ଲଢ଼େଇ କରିବାକୁ ପଡ଼ିବ। କିନ୍ତୁ ରାଜନୈତିକ କ୍ଷମତା ଦଖଲ କରିବା ଉଦ୍ଦେଶ୍ୟରେ ଅନ୍ତିମ ଲଢ଼େଇ ପାଇଁ ସେମାନଙ୍କୁ ଶିକ୍ଷିତ କରିବା ଉପଲକ୍ଷେ ଏହି ସଂଘର୍ଷଗୁଡ଼ିକ ହେଉଛି ଅତି ଉତ୍ତମ ମାଧ୍ୟମ।

ଏଗୁଡ଼ିକ ଛଡ଼ା, ଏକ ସୈନ୍ୟ ବିଭାଗ ସଂଗଠିତ କରିବା ଆବଶ୍ୟକତା ରହିଛି। ଏହା ଅତି ଜରୁରି। ବେଳେ ବେଳେ ଏକ ସୈନ୍ୟ ବିଭାଗର ଅଭାବ ଅତି ଭୟଙ୍କର ଭାବେ ଅନୁଭବ କରାଯାଏ। କିନ୍ତୁ ଠିକ୍ ସେହି ଆବଶ୍ୟକ କାଳରେ ହିଁ ଏକ ସୈନ୍ୟ ବାହିନୀ ଗଠନ କରିବା ପ୍ରକ୍ରିୟା ଆରମ୍ଭ କରି ତା ପାଇଁ ଯଥେଷ୍ଟ ପରିମାଣର ଯୁଦ୍ଧ ସାମଗ୍ରୀ ସଂଗ୍ରହ କରି ଶତ୍ରୁ ସହ ଦକ୍ଷତାର ସହ ଲଢ଼େଇ କରିବା ପାଇଁ ପ୍ରସ୍ତୁତ କରିବା ସମ୍ଭବ ନୁହେଁ। ସମ୍ଭବତଃ ଏହି

ବିଷୟଟିର ହିଁ ଅତି ଯତ୍ନର ସହ ବ୍ୟାଖ୍ୟା କରିବା ଆବଶ୍ୟକତା ରହିଛି। ଏହି ବିଷୟଟିକୁ ନେଇ ହିଁ ମୋତେ ଭୁଲ ବୁଝିବାର ବହୁତ ସମ୍ଭାବନା ରହିଛି। ଏମିତି ଦେଖିବାକୁ ତ ମୁଁ ସନ୍ତ୍ରାସବାଦୀ ଭଳି କାମ କରିଛି। କିନ୍ତୁ ମୁଁ ଜଣେ ସନ୍ତ୍ରାସବାଦୀ ନୁହେଁ। ମୁଁ ଜଣେ ବିପ୍ଳବୀ, ଯାହା ନିକଟରେ ଏକ ଦୀର୍ଘ କାର୍ଯ୍ୟକ୍ରମର ନିର୍ଦ୍ଦିଷ୍ଟ ଧାରଣାମାନ ରହିଛି ଯାହାର ଆଲୋଚନା ଏଠାରେ କରା ଯାଇଛି। ମୁଁ କାଳକୋଠରିରେ ରହିବା ଫଳରେ ମୋ ମନରେ କେତେକ ନିର୍ଦ୍ଦିଷ୍ଟ ଧରଣର ପ୍ରତିକ୍ରିୟା ସୃଷ୍ଟି ହୋଇଛି ବୋଲି ରାମ ପ୍ରସାଦ ବିସମିଲ୍ ଆରୋପ କଲା ଭଳି ମୋର ଅନ୍ୟ 'ଯୋଦ୍ଧା ସାଥୀମାନେ' ମଧ୍ୟ ଆରୋପ କରି ପାରନ୍ତି। କିନ୍ତୁ ତାହା ସତ୍ୟ ନୁହେଁ। ମୁଁ ବାହାରେ ଥିଲା ବେଳେ ମୋ ମୁଣ୍ଡରେ ଯେଉଁ ଧାରଣାସମୂହ ଥିଲା ଆଜି ମଧ୍ୟ ତାହା ଅଛି, ସେଇ ବିଶ୍ୱାସ ଅଛି, ସେଇ ଆନ୍ତରିକତା ଅଛି ଓ ସେଇ ସ୍ଫୂର୍ତ୍ତି ଅଛି, ସମ୍ଭବତଃ — ସମ୍ଭବତଃ କାହିଁକି, ନିଶ୍ଚିତ ରୂପେ — ତାଠାରୁ ଅଧିକ ଭଲ ଭାବେ। ତେଣୁ ମୋ ଲେଖା ପଢ଼ିଲା ବେଳେ ହୁସିଆର୍ ରହିବା ପାଇଁ ମୁଁ ମୋ ପାଠକମାନଙ୍କୁ ସତର୍କ କରି ଦେଉଛି। ଯାହା ଲେଖା ଯାଇନାହିଁ ତାହା ପଙ୍କ୍ତିଗୁଡ଼ିକର ମଝିରେ ମଝିରେ ପଢ଼ିବା ପାଇଁ ଚେଷ୍ଟା କରିବା ଉଚିତ ନୁହେଁ। ମୋର ସମସ୍ତ ଶକ୍ତି ଖଟେଇ ମୁଁ ଏହା ଘୋଷଣା କରେ ଯେ ମୁଁ ଜଣେ ସନ୍ତ୍ରାସବାଦୀ ନୁହେଁ ଏବଂ, ମୋର ବୈପ୍ଳବିକ ଜୀବନର ସମ୍ଭବତଃ ପ୍ରାରମ୍ଭ କାଳକୁ ଛାଡ଼ି ଦେଲେ, କେବେ ନଥିଲି। ମୋର ହୃଦ୍‌ବୋଧ ହୋଇଛି ଯେ ସେହି ପଦ୍ଧତିଗୁଡ଼ିକ ମାଧ୍ୟମରେ ଆମର କିଛି ଲାଭ ହେବନି। ହିନ୍ଦୁସ୍ଥାନ ସୋସିଆଲିଷ୍ଟ ରିପବ୍ଲିକାନ୍ ଏସୋସିଏସନ୍‌ର ଇତିହାସରୁ ଯେ କେହି ଏହାର ବିଚାର କରିପାରେ। ଗୋଟିଏ ଲକ୍ଷ୍ୟ ଆଡ଼କୁ ଆମର ସମସ୍ତ କାର୍ଯ୍ୟକଳାପ ପରିଚାଳିତ ହେଉଥିଲା, ଅର୍ଥାତ, ଏକ ମହାନ ଆନ୍ଦୋଳନ ସହ ଆମେମାନେ ନିଜକୁ

ଏକାକାର କରି ଦେଇଥିଲୁ ତାହାର ସେନା ବାହିନୀ ଭାବେ। କେହି ଯଦି ମୋତେ ଭୁଲ ବୁଝି ଥାଆନ୍ତି, ତେବେ ତାଙ୍କର ସେହି ଧାରଣାର ସଂଶୋଧନ କରନ୍ତୁ। ମୋର କହିବାର ଅର୍ଥ ଏହା ନୁହେଁ ଯେ ବୋମା ଓ ପିସ୍ତଲର ଆଉ ଆବଶ୍ୟକତା ନାହିଁ, ବରଂ ଠିକ୍ ତାର ବିପରିତ। ମୁଁ କହିବାର ଅର୍ଥ ଏହା ଯେ ଖାଲି ବୋମା-ଫୋପଡ଼ା କେବଳ ଅନୁପଯୋଗୀ ନୁହେଁ, ବେଳେ ବେଳେ କ୍ଷତିକାରକ ମଧ୍ୟ। ପାର୍ଟିର ସୈନ୍ୟ ବିଭାଗ ତା ଅଧୀନରେ ଥିବା ଯୁଦ୍ଧସାମଗ୍ରୀକୁ ଜରୁରି କାଳରେ ବ୍ୟବହାରକ୍ଷମ ଅବସ୍ଥାରେ ସର୍ବଦା ରଖିବା ଉଚିତ । ପାର୍ଟିର ରାଜନୈତିକ କାର୍ଯ୍ୟରେ ସହାୟତା କରିବା ଉଚିତ । ସ୍ୱାଧୀନ ଭାବେ ଏହା କାର୍ଯ୍ୟ କରିବନି, କରିବା ମଧ୍ୟ ଉଚିତ ନୁହେଁ।

ଉଲ୍ଲିଖିତ ମାର୍ଗରେ ପାର୍ଟି ତା କାମରେ ଆଗେଇବା ଉଚିତ। ନିର୍ଦ୍ଧାରିତ ସମୟରେ ମଝିରେ ମଝିରେ ସଭା, ସମ୍ମିଳନୀ ଜରିଆରେ କର୍ମୀମାନଙ୍କୁ ସମସ୍ତ ବିଷୟ ସମ୍ପର୍କରେ ଶିକ୍ଷିତ ତଥା ଆଲୋକିତ କରିବା ଉଚିତ।

ତୁମେ ଯଦି ଏହି ମାର୍ଗରେ କାମ କରିବା ଆରମ୍ଭ କର, ତେବେ ତୁମକୁ ଗାମ୍ଭୀର୍ଯ୍ୟପୂର୍ଣ୍ଣ ହେବାକୁ ପଡ଼ିବ। ଏହି କାର୍ଯ୍ୟକ୍ରମର ସମ୍ପୂର୍ଣ୍ଣତା ପାଇଁ ଅନ୍ତତଃ କୋଡ଼ିଏ ବର୍ଷ ଆବଶ୍ୟକ। ବର୍ଷକ ମଧ୍ୟରେ ସ୍ୱରାଜ ଆଣିବା ପାଇଁ ଗାନ୍ଧିଙ୍କର କଳ୍ପନାବିଳାସୀ ପ୍ରତିଶ୍ରୁତି ଭଳି ଦଶ ବର୍ଷ ମଧ୍ୟରେ ବିପ୍ଳବ କରିବା ପାଇଁ ତୁମର ଯଦି କୌଣସି ଯୁବସୁଲଭ ସ୍ୱପ୍ନ ଥାଏ ତେବେ ତାକୁ ଫୋପାଡ଼ି ଦିଅ। ବିପ୍ଳବ ଭାବପ୍ରବଣତା ଚାହେଁନା କି ମୃତ୍ୟୁ ଚାହେଁନା। ଏହା ଚାହେଁ ଅହରହ ସଂଗ୍ରାମର ଜୀବନ, ଯନ୍ତ୍ରଣାର ଜୀବନ, ବଳିଦାନର ଜୀବନ। ତୁମର ମୁଁ-କାରକୁ ପ୍ରଥମେ ପଦଦଳିତ କର। ବ୍ୟକ୍ତିଗତ ସୁଖର ସ୍ୱପ୍ନକୁ ଭାଙ୍ଗ। ତା ପରେ କାମ ଆରମ୍ଭ କର। ପାଦକ ପରେ ଆଉ ପାଦେ ତୁମକୁ ଆଗକୁ ବଢ଼ିବାକୁ ହେବ। ସେଥି ପାଇଁ ଆବଶ୍ୟକ ସାହସ, ଅଧ୍ୟବସାୟ ଓ ଅତି ଦୃଢ଼ ସଂକଳ୍ପ।

କୌଣସି ପ୍ରକାରର ବାଧାବିଘ୍ନ, କୌଣସି ପ୍ରକାରର ଦୁଃଖକଷ୍ଟ ତୁମକୁ ହତୋତ୍ସାହ କରିବନି। କୌଣସି ପ୍ରକାରର ବିଫଳତା, କୌଣସି ପ୍ରକାରର ବିଶ୍ୱାସଘାତକତା ତୁମକୁ ଅବସନ୍ନ କରିବନି। ତୁମ ଉପରେ ଯେତେ ଦୁଃଖଯନ୍ତ୍ରଣା ଚାପି ଦିଆଗଲେ ମଧ୍ୟ ତାହା ଯେପରି ତୁମ ଅନ୍ତରର ସେହି ବୈପ୍ଲବିକ ଇଚ୍ଛାଶକ୍ତିକୁ ଲୋପ କରି ନପକାଏ। ଦୁଃଖଯନ୍ତ୍ରଣା ଓ ବଳିଦାନର ଅଗ୍ନିପରୀକ୍ଷା ମଧ୍ୟ ଦେଇ ତୁମେ ବିଜୟୀ ହେବ। ଏହି ବ୍ୟକ୍ତିଗତ ବିଜୟଗୁଡ଼ିକ ହେବ ବିପ୍ଳବ ପାଇଁ ଉତ୍କୃଷ୍ଟ ସମ୍ପତ୍ତି।

***"ଇନ୍‌କିଲାବ୍ ଜିନ୍ଦାବାଦ!!!"***

*"ବିପ୍ଳବ ଦୀର୍ଘଜୀବୀ ହେଉ!!!"*

ଫେବୃୟାରୀ ୨, ୧୯୩୧

    

ଭାରତର ସ୍ୱାଧୀନତା ଆଜି ଆଉ ଏକ ଦୂର ଦୂରାନ୍ତର ସ୍ୱପ୍ନ ହୋଇ ରହିନି। ଘଟି ଯାଉଥିବା ଘଟଣାଗୁଡ଼ିକର ବେଗ ଅତି ପ୍ରଖର। ଏଣୁ ସ୍ୱାଧୀନତା ଆମ ଆଶା ଠୁଁ ଅଧିକ ବେଗରେ ବାସ୍ତବ ହେଇ ଯିବ। ବ୍ରିଟିଶ୍ ସାମ୍ରାଜ୍ୟ ଲଢ଼େଇରେ ପୁରାପୁରି ଭାବେ ଲହୁଲୁହାଣି ହୋଇ ସାରିଛି। ଜର୍ମାନୀର ପାଟି ଖନି ମାରୁଛି। ଫ୍ରାନ୍ସ ଥର ଥର କମ୍ପୁଛି। ଏବଂ ଆମେରିକା ଦୋହଲି ଯାଇଛି। ଆଉ ଏମାନଙ୍କର ଅଖଣ୍ଡି ହିଁ ଆମ ପାଇଁ ସୁବର୍ଣ୍ଣ ସୁଯୋଗ।

ପ୍ରତ୍ୟେକ କଥା ସେହି ମହାନ ଭବିଷ୍ୟବାଣୀ ଆଡ଼କୁ ସଂକେତ କରୁଛି, ଯାହା ଅନୁସାରେ ସମାଜର ପୁଞ୍ଜିବାଦୀ ଢାଞ୍ଚା ଧ୍ୱସ୍ତବିଧ୍ୱସ୍ତ ହେବା ନିଶ୍ଚିତ।

କୁଟନୀତିଜ୍ଞମାନେ ନିଜକୁ ବଞ୍ଚେଇବା ପାଇଁ ଉଦ୍ୟମ କରି ପାରନ୍ତି ଓ ପୁଞ୍ଜିବାଦୀ ଷଡ଼ଯନ୍ତ୍ର ଦ୍ୱାରା 'ବିପ୍ଳବର ବାଘ'କୁ ନିଜ ଘରଠୁଁ ଦୂରରେ ରଖିବାକୁ ଚେଷ୍ଟା କରି ପାରନ୍ତି। ଇଂରେଜମାନଙ୍କର ବଜେଟ ସନ୍ତୁଳିତ ହୋଇ ପାରେ ଓ ମୃତ୍ୟୁ ମୁଖରେ ପଡ଼ିଥିବା ପୁଞ୍ଜିବାଦକୁ କିଛି କ୍ଷଣ ପାଇଁ ଯନ୍ତ୍ରଣାରୁ ମୁକ୍ତି ମିଳିପାରେ।

'ଡଲାର ରଜା' ଚାହିଁଲେ ନିଜର ମୁକୁଟ ଯଦି ବି ସମ୍ଭାଳି ନିଏ, ତା ସତ୍ତ୍ୱେ ବି ଯଦି ବ୍ୟାପକ ମାନ୍ଦା ଅବସ୍ଥା ଜାରି ରହେ ଏବଂ ଯାହା ଜାରି ରହିବା ଅପରିହାର୍ଯ୍ୟ, ତେବେ ବେକାରମାନଙ୍କର ଫଉଜ ତୀବ୍ର ବେଗରେ ବଢ଼ିବ ଏବଂ ଏହା ବଢୁଛି ବି, କାରଣ ପୁଞ୍ଜିବାଦୀ ଉତ୍ପାଦନ ବ୍ୟବସ୍ଥା ହିଁ ସେୟା।

ଏହି ଅଖଣ୍ଡ ଅବସ୍ଥା ପୁଞ୍ଜିବାଦୀ ବ୍ୟବସ୍ଥାକୁ ପୋଇରୁ ବେପୋଇ କରି ଦେବ। ବାସ୍, କେତୋଟି ମାସର କଥା ମାତ୍ର। ଏଣୁ ବିପ୍ଳବ ଆଜି ଆଉ କେବଳ ମାତ୍ର ଭବିଷ୍ୟବାଣୀ ବା ସମ୍ଭାବନା ହୋଇ ରହିନାହିଁ ବରଂ 'ବ୍ୟବହାରିକ ରାଜନୀତି' ହୋଇ ସାରିଛି, ଯାହାକୁ ବୁଝି ସୁଝି ପୂର୍ବକଳ୍ପିତ ଯୋଜନା ଓ ଦୃଢ଼ ପଦକ୍ଷେପ ଦ୍ୱାରା ସଫଳ କରାଯାଇ ପାରିବ। ଏହାର ବିଭିନ୍ନ ଦିଗ ଓ ତାତ୍ପର୍ଯ୍ୟ, ଏହାର ବିଭିନ୍ନ ରଣନୀତି ଓ ରଣକୌଶଳ, ପଦ୍ଧତି ତଥା ଉଦ୍ଦେଶ୍ୟକୁ ନେଇ କୌଣସି ଭାବର ବିଚାରବିଭ୍ରାନ୍ତି ନ ହେବା ଉଚିତ।

କଂଗ୍ରେସ ଆନ୍ଦୋଳନର ସମ୍ଭାବନା, ପରାଜୟ ଓ ଫଳପ୍ରାପ୍ତିକୁ ନେଇ ଆମ ମନରେ କୌଣସି ପ୍ରକାର ଭ୍ରମ ଜାତ ହେବା ଉଚିତ ନୁହେଁ। ଆଜି ଯେଉଁ ଆନ୍ଦୋଳନ ଚାଲୁଛି ତାକୁ ଗାନ୍ଧୀବାଦ କହିବା ହିଁ ଠିକ୍ ହେବ। ଏହା ସମସ୍ତ ଅଧିକାର, ସମସ୍ତ ଦୃଢ଼ତାର ସହ ସ୍ୱାଧୀନତା ପାଇଁ ଷ୍ଟେଣ୍ଡ୍ ନେଉନି, ଓଲଟି ଶାସନରେ 'ଭାଗଦାରୀ' ହେବା ସପକ୍ଷରେ ରହିଛି। 'ପୂର୍ଣ୍ଣ ସ୍ୱତନ୍ତ୍ରତା'ର କିମ୍ଭୁତକିମାକାର ଅର୍ଥ ସବୁ ବାଢ଼ି ବସୁଛି। ଏହାର ଉପାୟ ମଧ୍ୟ ଅଦ୍ଭୁତ। କିନ୍ତୁ

ବିଚ୍ଛାରା ଲୋକମାନଙ୍କର ଏହା କୌଣସି କାମର ନୁହେଁ। ସାବରମତିର ସନ୍ଥଙ୍କ ଗାନ୍ଧୀବାଦ କୌଣସି ସ୍ଥାୟୀ ଶିକ୍ଷ୍ୟ ଦେଇ ପାରିବନି। ଏହା ହେଉଛି ଏକ ମଧ୍ୟମ ପନ୍ଥୀ ପାର୍ଟି ଅର୍ଥାତ୍ ଲିବେରାଲ (ନରମପନ୍ଥୀ) ଓ ରେଡିକାଲ୍ (ଚରମପନ୍ଥୀ) ମାନଙ୍କ ମଧ୍ୟରେ ମିଳାମିଶା ପାଇଁ କାମ କରୁଛି ଓ ଏହି କାମ ହିଁ କରି ଆସିଛି। ବାସ୍ତବ ସୁଯୋଗ ସହ ଲଢ଼ିବା ପାଇଁ ଏହା ଲାଜ କରୁଛି। ଏହାକୁ ଯେଉଁମାନେ ପରିଚ୍ଛାଳନା କରୁଛନ୍ତି ସେମାନେ ଦେଶର ଏମିତିକା ଲୋକ ଯେଉଁମାନଙ୍କର ହିତ ଏହା ସହ ବାନ୍ଧି ହୋଇ ରହିଛି ଏବଂ ସେମାନେ ନିଜର ହିତ ସାଧନ ପାଇଁ ବୁର୍ଜୁଆ ଜିଦ୍, ଅଭିପ୍ରାୟ ସହ ଜୋଡ଼ି ହୋଇ ରହିଛନ୍ତି। ଯଦି ବିପ୍ଳବୀ ରକ୍ତ ଦ୍ୱାରା ଏଥିରେ କିଛି ଉତ୍ତେଜନା, କିଛି ଉତ୍ସାହ ଭରି ଦିଆ ନଯାଏ ତେବେ ଏହା ଥଣ୍ଡା ପଡ଼ିଯିବା ଅବଶ୍ୟମ୍ଭାବୀ। ଏହାକୁ ଏହାର ବନ୍ଧୁମାନଙ୍କ ହାତୁଡ଼ରୁ ଉଦ୍ଧାର କରିବା ନିହାତି ଜରୁରି।

ଆସନ୍ତୁ ଆମେ ଏହି କଠିନ ପ୍ରଶ୍ନ ସମ୍ପର୍କରେ ସ୍ପଷ୍ଟ ହୋଇଯିବା। ବୋମାର ରାସ୍ତା ୧୯୦୫ରୁ ଚାଲି ଆସୁଅଛି ଓ ଏହା ବିପ୍ଳବୀ ଭାରତ ଉପରେ ଏକ ଦୁଃଖଭରା ଟିପଣୀ ଅଟେ। ଏହାର ଉପକାର କଣ ଓ ଅପକାର କଣ ବର୍ତ୍ତମାନ ଅନୁଭବ କରା ଯାଇନି। ଆମ ସମାଜରେ ବୈପ୍ଳବିକ ଚିନ୍ତାକୁ ବୁଝିବାରେ ଯେଉଁ ଅଭାବ ରହିଛି, ଆତଙ୍କବାଦ ସେହି ଅଭାବର ଅଭିବ୍ୟକ୍ତି ଅବା ଏକ ଅନୁତାପ। ଏହି ଭାବେ ଏହା ନିଜର ଅସଫଳତାର ସ୍ୱୀକୃତି ମଧ୍ୟ। ଏହାର ଆରମ୍ଭ କାଳରେ ଏଥିରୁ କିଛି କିଛି ଲାଭ ମିଳିଥିଲା। ଏହା ରାଜନୀତିକୁ ଆମୂଳଚୂଳ ବଦଳେଇ ଦେଲା। ନବଯୁବକ ବୁଦ୍ଧିଜୀବୀଙ୍କ ଚିନ୍ତା ଜଗତରେ ଚମକ ସୃଷ୍ଟି କଲା, ଆତ୍ମତ୍ୟାଗର ଭାବନାକୁ ଜ୍ୱଳନ୍ତ ରୂପ ଦେଲା ଏବଂ ଦୁନିଆଁ ଓ ନିଜର ଶତ୍ରୁଙ୍କ ସାମନାରେ ନିଜର ଆନ୍ଦୋଳନର ବାସ୍ତବତା ତଥା ଶକ୍ତି ପ୍ରକଟ କରିବା ପାଇଁ ସୁଯୋଗ ଦେଲା। କିନ୍ତୁ ଏହା ସ୍ୱୟଂ ସମ୍ପୂର୍ଣ୍ଣ ନୁହେଁ। ସବୁ

ଦେଶରେ ଏହାର (ଆତଙ୍କବାଦର) ଇତିହାସ ଅସଫଳତାର ଇତିହାସ ଅଟେ। ଫ୍ରାନ୍ସ, ଋଷିଆ, ଜର୍ମାନୀରେ, ବଲକାନ୍ ଦେଶଗୁଡ଼ିକରେ, ସ୍ପେନ୍‌ରେ ସବୁଠିଁ ତାର ସେଇ ଏକା କାହାଣୀ। ଏହାର ପରାଜୟର ବିହନ ଏହାର ଭିତରେ ହିଁ ଥାଏ।

ସାମ୍ରାଜ୍ୟବାଦୀମାନେ ଏହି କଥା ଭଲ ଭାବେ ଜାଣନ୍ତି ଯେ ୩୦ କୋଟି ଲୋକଙ୍କୁ ଶାସନ କରିବା ପାଇଁ ପ୍ରତି ବର୍ଷ ୩୦ ଜଣଙ୍କୁ ବଳି ଦିଆଯାଇ ପାରେ। ଶାସନ କରିବାର ସ୍ୱାଦ ବୋମା ଓ ପିସ୍ତଲ ଦ୍ୱାରା ତ ଭଣ୍ଡୁର କରାଯାଇ ପାରେ। କିନ୍ତୁ ଶୋଷଣର ମହାଜନି ଲାଭ ତାକୁ ହିଁ କାଏମ୍ ରଖିବା ପାଇଁ ବିବଶ କରିଦେବ। ଆଚ୍ଛା, ଆମର ଆଶା ଅନୁସାରେ ହତିଆର ଯଦି ବି ସହଜରେ ମିଳିଯାଏ ଓ ଆମେ ଯଦି ପୁରା ଦମ୍‌ରେ ଲଢୁଁ ଯେପରି ଇତିହାସରେ ଆଗରୁ କେବେ ସେପରି ଲଢ଼େଇ ହୋଇ ନଥିବ, ତେବେ ବି ଆତଙ୍କବାଦ ଅତି ବେଶିରେ ସାମ୍ରାଜ୍ୟବାଦୀ ଶକ୍ତିକୁ ରାଜିନାମା ପାଇଁ ହିଁ ବାଧ୍ୟ କରିପାରେ। ଏହି ଭଳିଆ ରାଜିନାମା ଆମର ଉଦ୍ଦେଶ୍ୟପୂର୍ଣ୍ଣ ସ୍ୱାଧୀନତା ଠାରୁ ସର୍ବଦା କାହିଁ ନା କାହିଁ ଦୂରରେ ରହିବ। ଏହି ଭାବେ ଆତଙ୍କବାଦ ଏକ ରାଜିନାମା, ସଂସ୍କାରର ଏକ କିସ୍ତି, ଚିପୁଡ଼ା ଚିପୁଡ଼ି ବାହାର କରି ପାରେ ଏବଂ ଏହା ହିଁ ହାସଲ କରିବା ପାଇଁ ଗାନ୍ଧୀବାଦ ମଧ୍ୟ ଚାପ ପକାଉଛି। ତାହା ଚାହୁଁଛି ଯେ ଦିଲ୍ଲୀର ଶାସନ ଗୋରାଙ୍କ ହାତରୁ ମାଟିଆ ବର୍ଣ୍ଣର ଲୋକଙ୍କ ହାତକୁ ଚାଲି ଆସୁ ଏବଂ ଯେହେତୁ ତାହା ଲୋକଙ୍କ ଜୀବନ ଠୁଁ ବହୁତ ଦୂରରେ, ଶାସନ ଗାଦିରେ ବସୁ ବସୁ ଅତ୍ୟାଚାରୀ ପାଲଟି ଯିବାର ବହୁତ ସମ୍ଭାବନା ରହିଛି। ଆଇରିଶ୍ ଉଦାହରଣ ଏଠି ପ୍ରଯୁଜ୍ୟ ନୁହେଁ। ଏହି ଚେତାବନୀ ମୁଁ ଦେବା ପାଇଁ ଚାହୁଁଛି।

ଜଣେ ଦୁଇ ଜଣଙ୍କର ଆତଙ୍କବାଦୀ କାରବାର ଆୟରଲେଣ୍ଡ୍‌ରେ ନଥିଲା, ବରଂ ଏହା ରାଷ୍ଟ୍ରୀୟ ସ୍ତରରେ ଜନସାଧାରଣଙ୍କର ବିଦ୍ରୋହ ଥିଲା ଯହିଁରେ ବନ୍ଧୁକଧାରୀମାନେ ଆଖପାଖର ପରିଚିତ, ସମଦୁଃଖୀ ତଥା ସହାନୁଭୂତିଶୀଳ ଲୋକଙ୍କ ମଧ୍ୟରେ ମିଳେଇ ଯାଉଥିଲେ। ସେମାନଙ୍କୁ ଅତି ସହଜରେ ଅସ୍ତ୍ରଶସ୍ତ୍ର ମିଳି ଯାଉଥିଲା କାରଣ ଆମେରିକାରେ ଥିବା ଆଇରିଶ୍ ଲୋକମାନେ ଅଗାଧ ଆର୍ଥିକ ସାହାଯ୍ୟ ଦେଉଥିଲେ। ଭୌଗଳିକ ସ୍ଥିତି ବି ଏମିତି ଯୁଦ୍ଧ ପାଇଁ ସୁବିଧାଜନକ ଥିଲା। ତା ସତ୍ତ୍ୱେ ଆୟରଲେଣ୍ଡ୍‌କୁ ନିଜର ଆନ୍ଦୋଳନର ଉଦ୍ଦେଶ୍ୟଗୁଡ଼ିକ ଅପୂର୍ଣ୍ଣ ରହିଥିଲେ ବି ସନ୍ତୋଷ ହେବାକୁ ପଡ଼ିଥିଲା। ଏହା ଆଇରିଶ୍ ଲୋକଙ୍କର ଦାସତ୍ୱକୁ ତ କମ୍ କରିଥିଲା, କିନ୍ତୁ ଆଇରିଶ୍ ଶ୍ରମିକ ଶ୍ରେଣୀକୁ ପୁଞ୍ଜିପତିମାନଙ୍କ ଜଞ୍ଜାଳରୁ ମୁକ୍ତ କଲାନି। ଭାରତକୁ ଆୟରଲେଣ୍ଡ୍ ନିକଟରୁ ଶିଖିବାକୁ ହେବ। ଏହା ମଧ୍ୟ ଏକ ଚେତାବନୀ ଯେ — ପରିସ୍ଥିତିଗୁଡ଼ିକ ପରସ୍ପରର ସପକ୍ଷବାଦୀ ହେବା ସତ୍ତ୍ୱେ — ବୈପ୍ଳବିକ ସାମାଜିକ ଆଧାରରୁ ଜାତ ତୁଚ୍ଛା ରାଷ୍ଟ୍ରବାଦୀ ଆଦର୍ଶବାଦ କିପରି ସାମ୍ରାଜ୍ୟବାଦ ସହ ରାଜିନାମା ରୂପକ ମରୁବାଲିରେ ହଜି ଯାଇପାରେ। କଣ ଭାରତକୁ ଏବେ ବି ଆୟରଲେଣ୍ଡ୍‌ର ନକଲ କରିବା ଆବଶ୍ୟକ? ଯଦି ତାହା ବି କରାଯାଇ ପାରିବ ତେବେ ବି?

ଏକ ପକ୍ଷରେ ଗାନ୍ଧୀବାଦ ନିଜର ଭାଗ୍ୟବାଦୀ ତତ୍ତ୍ୱ ବାଢ଼ିବା ସଙ୍ଗେ ସଙ୍ଗେ ବୈପ୍ଳବିକ ତତ୍ତ୍ୱର କିଛିଟା ପାଖାପାଖି ପହଞ୍ଚିବା ପାଇଁ ଚେଷ୍ଟା କରୁଛି କାରଣ ଏହା ସଫଳତା ପାଇଁ ସାମୁହିକ କାର୍ଯ୍ୟକ୍ରମ ଉପରେ ନିର୍ଭର କରେ। ଯଦିଚ୍ ଏହି କାର୍ଯ୍ୟକ୍ରମର ସଫଳତା ସମୁହଙ୍କ ପାଇଁ ଉଦ୍ଦିଷ୍ଟ ନୁହେଁ। ସେମାନେ ଶ୍ରମିକମାନଙ୍କୁ ଆନ୍ଦୋଳନରେ ଅଂଶୀଦାର କରି ସେମାନଙ୍କୁ ଶ୍ରମିକ ବିପ୍ଳବର ମାର୍ଗରେ ନେଇ ଛାଡ଼ି ଦେଇଛନ୍ତି। ଅବଶ୍ୟ ଏହି କଥା ଅଲଗା ଯେ ସେମାନେ

ନିଜର ରାଜନୈତିକ କାର୍ଯ୍ୟକ୍ରମରେ ସେମାନଙ୍କୁ କେତେ ଅସଭ୍ୟ ଭାବେ ଅବା କେତେ ସ୍ୱାର୍ଥୀ ହୋଇ ବ୍ୟବହାର କରିଛନ୍ତି। ବିପ୍ଳବୀମାନେ 'ଅହିଂସାର ଦୂତ'ଙ୍କୁ ତାଙ୍କର ଯୋଗ୍ୟ ସ୍ଥାନ ଦେବା ଉଚିତ।

ଆତଙ୍କବାଦର ସଇତାନକୁ ପ୍ରଶଂସା କରିବାର ଆବଶ୍ୟକତା ନାହିଁ। ଆତଙ୍କବାଦୀମାନେ ଯଥେଷ୍ଟ କାମ କରିଛନ୍ତି। ବହୁତ କିଛି ଶିଖେଇ ଦେଇଛନ୍ତି। ଯଦି ଆମେ ଆମର ଉଦ୍ଦେଶ୍ୟ ତଥା ରଣନୀତି ଓ ରଣକୌଶଳକୁ ନେଇ କିଛି ଭୁଲ ନକରୁ ତେବେ ଏହା ଆଜି ବି କିଛିଟା ଲାଭପ୍ରଦ ହେଇପାରେ। ବିଶେଷ କରି ନିରାଶିଆ ବାତାବରଣରେ ଆତଙ୍କବାଦୀ ଉପାୟ ଆମର ପ୍ରଚାର ଅଭିଯାନରେ ସହାୟକ ହୋଇ ପାରେ। କିନ୍ତୁ ଏହା ଫଟାକାବାଜି ଛଡ଼ା ଅନ୍ୟ କିଛି ନୁହେଁ ଏବଂ ଏହାକୁ ବିଶେଷ ସମୟ ପାଇଁ ଓ ବିଶିଷ୍ଟ ଲୋକଙ୍କ ହାତରେ ସୁରକ୍ଷିତ ରହିବା ଉଚିତ। ବିପ୍ଳବୀମାନଙ୍କୁ ମୂଲ୍ୟହୀନ ଆତଙ୍କବାଦୀ କାର୍ଯ୍ୟକ୍ରମ ଓ ବ୍ୟକ୍ତିଗତ ଆତ୍ମ ବଳିଦାନ ଭଳି ପାପଚକ୍ର ମଧ୍ୟକୁ ଠେଲି ଦେବା ଉଚିତ ନୁହେଁ। ସେମାନେ ସମସ୍ତେ ଉତ୍ସାହବର୍ଦ୍ଧକ ଆଦର୍ଶ ଉଦ୍ଦେଶ୍ୟ ପାଇଁ ନ ମରି, ଉଦ୍ଦେଶ୍ୟ ପାଇଁ ବଞ୍ଚିବା ଆବଶ୍ୟକ ଓ ତାହା ପୁଣି ଲାଭଦାୟକ ଉପାୟରେ, ଯୋଗ୍ୟ ରୂପରେ ଜୀଇଁବାଟା ଉଚିତ ହେବ।

ଏହା କହିବାର କୌଣସି ଆବଶ୍ୟକତା ନାହିଁ ଯେ ଆମେ ଆତଙ୍କବାଦ ସହ ପୁରାପୁରି ସମ୍ପର୍କ ତୁଟେଇ ଦେଉନୁ। ଶ୍ରମିକ ବିପ୍ଳବର ଦୃଷ୍ଟିକୋଣରୁ ଆମେ ଏହାର ରୀତିନୀତିର ସମ୍ପୂର୍ଣ୍ଣ ମୂଲ୍ୟାୟନ ଚାହୁଁଛୁ। ଯେଉଁ ନବଯୁବକ ପରିପକ୍ୱ ହେଉନି ଓ ଚୁପ୍‌ଚାପ୍ (ରଣନୀତି ଓ ରଣକୌଶଳ ଦୃଷ୍ଟିରୁ) ସଂଗଠନ କାମରେ ଫିଟ୍ ହେଉନି, ତାହା ପାଇଁ ଅନ୍ୟ କୌଣସି ଭୂମିକା ଥାଇ ପାରେ। ତାକୁ ନିରସ କାମରୁ ମୁକ୍ତି ଦେଇ ନିଜ ଇଚ୍ଛା ପୂରଣ କରିବା ପାଇଁ ଛାଡ଼ି ଦେବା ଉଚିତ। କିନ୍ତୁ ପାର୍ଟି ଓ ସେହି କାମର ପ୍ରଭାବ ଦ୍ୱାରା ଲୋକେ କି ଭାବେ

ପ୍ରଭାବିତ ହେବେ ତାହା ଏବଂ ଶତ୍ରୁର ଶକ୍ତିକୁ ପରିଚାଳନା କମିଟି ଆଗରୁ ହିଁ ଦେଖିବା ଉଚିତ। ଏପରି କାମ ପାର୍ଟି ଓ ଜନତାର ଧ୍ୟାନ ଲଢୁଆ ଜନସଂଘର୍ଷଠୁଁ ଦୂରେଇ ଦେଇ ପ୍ରବଳ ଭାବେ ଉତ୍ତେଜିତ କଲା ଭଳି କାମରେ ଲଗା ଯାଇପାରେ ଏବଂ ଏହି ଭାବେ ପାର୍ଟିର ମୂଳଦୁଆରେ ଶାବଳ ମାରିବା ପାଇଁ ମାଧ୍ୟମ ହୋଇ ପାରେ। ଏହି ଭଳିଆ କୌଣସି ବି ପରିସ୍ଥିତିରେ ଏପରି ଆଦର୍ଶକୁ ଆଗକୁ ବଢ଼ିବା ପାଇଁ ଦିଆ ଯିବନି।

କିନ୍ତୁ ଗୁପ୍ତ ସୈନିକ ବିଭାଗ କୌଣସି ଶାପଗ୍ରସ୍ତ ବସ୍ତୁ ନୁହେଁ। ବାସ୍ତବରେ ୟିଏତ ହେଉଛି ଆଗୁଆ ଧାଡ଼ି। ବିପ୍ଳବୀ ପାର୍ଟିର 'ଗୁଳିମାର ଧାଡ଼ି' 'ଆଧାର' ସହ ପୁରାପୁରି ଜୋଡ଼ି ହୋଇ ରହିବା ଉଚିତ। 'ଆଧାର' ଲଢୁଆ ଓ ଗତିଶୀଳ ଜନପାର୍ଟି ହେବାକୁ ହେବ। ସଂଗଠନ ପାଇଁ ଧନ ଓ ଅସ୍ତ୍ରଶସ୍ତ୍ର ସଂଗ୍ରହ କଲା ବେଳେ ଆଦୌ ଦୋଦୋପାଞ୍ଚ ହେବା ଉଚିତ ନୁହେଁ।

ବିପ୍ଳବ ସମ୍ପର୍କରେ ଆମର ଅଭିପ୍ରାୟ ସ୍ପଷ୍ଟ। ଏହି ଶତାବ୍ଦୀରେ ଏହାର କେବଳ ଏକ ମାତ୍ର ଅର୍ଥ ହୋଇ ପାରେ। ଜନତାଙ୍କ ପାଇଁ ଜନତା ରାଜନୈତିକ କ୍ଷମତା ହାସଲ କରିବା। ବାସ୍ତବରେ ଏହା ହିଁ ହେଉଛି 'ବିପ୍ଳବ', ବାକି ସମସ୍ତ ବିଦ୍ରୋହ ତ କେବଳ ମାଲିକମାନଙ୍କର ପରିବର୍ତ୍ତନ ଦ୍ୱାରା ପଚା ପୁଞ୍ଜିବାଦୀ ଦୁର୍ଗନ୍ଧକୁ ଆହୁରି ତୀବ୍ରତର କରେ। ଲୋକମାନଙ୍କ ପ୍ରତି ବା ସେମାନଙ୍କର ଉଦ୍ଦେଶ୍ୟ ପ୍ରତି ଜ୍ଞାପନ କରା ଯାଇଥିବା ସମବେଦନା ଯେକୌଣସି ସୀମା ପର୍ଯ୍ୟନ୍ତ ହେଇ ଥାଉନା କାହିଁକି, ଲୋକଙ୍କ ଠାରୁ ବାସ୍ତବିକତାକୁ ଲୁଚେଇ ପାରିବନି। ଲୋକ ଛଳନା କଣ ଜାଣିଛନ୍ତି। ଭାରତରେ ଆମେ ଭାରତୀୟ ଶ୍ରମିକଙ୍କ ଶାସନଠୁଁ କମ୍ କିଛି ଚାହୁଁନୁ। ଭାରତୀୟ ଶ୍ରମିକମାନଙ୍କୁ ଭାରତରେ ସାମ୍ରାଜ୍ୟବାଦୀ ଓ ସେମାନଙ୍କର ସହଯୋଗୀମାନଙ୍କୁ ହଟେଇ ଆଗକୁ ଆସିବାକୁ ହେବ। ଏମାନେ ସେହି ଆର୍ଥିକ ବ୍ୟବସ୍ଥାର ଚାଟୁକାର ଯାହାର

ତେର ଶୋଷଣ ଉପରେ ଆଧାରିତ। ଆମେ ଗୋରା ଦୁଷ୍ଟଙ୍କ ସ୍ଥାନରେ କଳା ଦୁଷ୍ଟଙ୍କୁ ଆଣି ଆଉ କଷ୍ଟ ସହିବାକୁ ଚାହୁଁନୁ। ଦୁଷ୍ଟମାନେ ଏକ ସ୍ୱାର୍ଥୀ ସମୁଦାୟ ଭଳି, ଜଣେ ଆଉ ଜଣକର ସ୍ଥାନ ନେବା ପାଇଁ ସଦା ପ୍ରସ୍ତୁତ।

ସାମ୍ରାଜ୍ୟବାଦୀମାନଙ୍କୁ ଗାଦିରୁ ହଟେଇବା ପାଇଁ ଭାରତର ଏକମାତ୍ର ହତିଆର ହେଉଛି ଶ୍ରମିକ ବିପ୍ଳବ। ଅନ୍ୟ କୌଣସି ଉପାୟ ଏହି ଉଦ୍ଦେଶ୍ୟକୁ ପୂରଣ କରି ପାରିବନି। ବିଭିନ୍ନ ବିଚାର ଧାରାର ସମସ୍ତ ରାଷ୍ଟ୍ରବାଦୀମାନେ ଗୋଟିଏ ଉଦ୍ଦେଶ୍ୟକୁ ନେଇ ଏକମତ ଯେ ସାମ୍ରାଜ୍ୟବାଦୀମାନଙ୍କ ନିକଟରୁ ସ୍ୱାଧୀନତା ହାସଲ ହେଉ। କିନ୍ତୁ ସେମାନଙ୍କୁ ଏହା ବି ବୁଝିବା ଆବଶ୍ୟକ ଯେ ବିଦ୍ରୋହୀ ଜନତା ହେଉଛନ୍ତି ସେମାନଙ୍କର ଆନ୍ଦୋଳନର ଚାଳକ ଶକ୍ତି ଓ ତାଙ୍କରି ଲଢୁଆ କାର୍ଯ୍ୟକ୍ରମରୁ ହିଁ ସଫଳତା ହାସଲ ହେବ। ଏହାର ସରଳ ସମାଧାନ ହେଇ ପାରିବନି। ଏଣୁ ନିଜକୁ ଛଳନାର ବଶବର୍ତ୍ତୀ କରି ସେମାନେ ସେହି ଆଡ଼କୁ ଡେଇଁ ପଡୁଛନ୍ତି ଯାହାକୁ ସେମାନେ କଳ୍ପିତ, ଅଥଚ ଝଟପଟ କାମ କରୁଥିବା ପ୍ରଭାବଶାଳୀ, ଚିକିତ୍ସା ବୋଲି ମାନନ୍ତି। ଅର୍ଥାତ୍ କେତେକ ଏହି ଭଳିଆ ଦୃଢ଼ ଆଦର୍ଶବାଦୀ ରାଷ୍ଟ୍ରବାଦୀମାନଙ୍କ ସଶସ୍ତ୍ର ବିଦ୍ରୋହ ଜରିଆରେ ବିଦେଶୀ ଶାସନକୁ ଓଲଟେଇ ସମାଜବାଦୀ ରାସ୍ତାରେ ରାଜ୍ୟର ପୁନର୍ଗଠନ। ସେମାନେ ସମୟର ବାସ୍ତବିକତା ଆଡ଼କୁ ଟିକିଏ ଲଇଁପଡ଼ି ଦେଖିବା ଆବଶ୍ୟକ। ବହୁ ପରିମାଣରେ ଅସ୍ତ୍ରଶସ୍ତ୍ର ହସ୍ତଗତ ହେଉନି। ପୁଣି ଲଢୁଆ ଜନତାଙ୍କ ନିକଟରୁ ଅଲଗା ହେଇ ଏକ ଅଶିକ୍ଷିତ ଗୋଷ୍ଠୀର ବିଦ୍ରୋହ ସଫଳ ହେବାର ଚାନ୍ସ ଏ ଯୁଗରେ ନାହିଁ। ରାଷ୍ଟ୍ରବାଦୀମାନଙ୍କର ସଫଳତା ପାଇଁ ସେମାନଙ୍କର ସମଗ୍ର ଜାତିଟା ଆନ୍ଦୋଳନ ମଧ୍ୟକୁ ଆସିବା ଉଚିତ, ବିଦ୍ରୋହ ପାଇଁ ଠିଆ ହେବା ଉଚିତ। ପୁଣି ଜାତିଟା କଂଗ୍ରେସର ଲାଉଡ୍‌ସ୍ପିକର୍ ନୁହେଁ, ବରଂ ସେମାନେ ହେଉଛନ୍ତି ଶ୍ରମିକ କୃଷକ ଯେଉଁମାନେ ଭାରତର

ଜନସଂଖ୍ୟାର ଶତକଡ଼ା ୯୫ ଭାଗ। ରାଷ୍ଟ୍ରବାଦର ବିଶ୍ୱାସ ଭିତ୍ତିରେ ହିଁ ରାଷ୍ଟ୍ର ନିଜକୁ ଆନ୍ଦୋଳନ ମଧ୍ୟକୁ ଆଣିବ। ଅର୍ଥାତ୍ ସାମ୍ରାଜ୍ୟବାଦ ଓ ପୁଞ୍ଜିପତିଙ୍କ ଦାସତ୍ୱରୁ ମୁକ୍ତି ପାଇବା ପାଇଁ ବିଶ୍ୱାସ ଜନ୍ମାଇବା ଦ୍ୱାରା।

ଆମକୁ ଏହା ମନେ ରଖିବାକୁ ହେବ ଯେ ଶ୍ରମିକ ବିପ୍ଳବ ବ୍ୟତିତ ଅନ୍ୟ କୌଣସି ବିପ୍ଳବ ପାଇଁ ଇଚ୍ଛା କରିବା ଉଚିତ ନୁହେଁ ଓ ସେପରି ବିପ୍ଳବ ବି ସଫଳ ହେଇ ପାରିବନି।

ସମୟର ଆବଶ୍ୟକତା ହେଲା ବିପ୍ଳବର କାର୍ଯ୍ୟକ୍ରମ ସ୍ପଷ୍ଟ ଓ ସତ୍ୟନିଷ୍ଠ ହେବା ଏବଂ ଏହି କାର୍ଯ୍ୟକ୍ରମକୁ କାର୍ଯ୍ୟକାରୀ କରିବା ପାଇଁ ଦୃଢ଼ ପଦକ୍ଷେପ ନେବା ଜରୁରି।

୧୯୧୭ରେ ଅକ୍ଟୋବର ବିପ୍ଳବର ପୂର୍ବ କାଳରେ ଯେତେବେଳେ ଲେନିନ ମସ୍କୋରେ ଅଜ୍ଞାତବାସରେ ଥିଲେ ସେତେବେଳେ ସେ ସଫଳ ବିପ୍ଳବ ପାଇଁ ତିନୋଟି ଜରୁରି ସର୍ତ୍ତ ବାଢ଼ି ଥିଲେ:

√ ରାଜନୈତିକ–ଆର୍ଥିକ ପରିସ୍ଥିତି।

√ ଜନଗଣଙ୍କ ମନରେ ବିଦ୍ରୋହ ଭାବନା।

√ ଏକ ବିପ୍ଳବୀ ପାର୍ଟି ଯିଏ ପୁରାପୁରି ଭାବେ ତାଲିମ୍ ପାଇଥିବ, ଯୋଗ୍ୟତା ହାସଲ କରିଥିବ ଓ ଅଗ୍ନି ପରୀକ୍ଷା ସମୟରେ ଜନଗଣଙ୍କୁ ନେତୃତ୍ୱ ଦେବା ପାଇଁ ସକ୍ଷମ ଥିବା।

ଭାରତରେ ପ୍ରଥମ ସର୍ତ୍ତଟି ପୂରଣ ହୋଇ ସାରିଛି। ଦ୍ୱିତୀୟ ଓ ତୃତୀୟ ସର୍ତ୍ତ ଦୁଇଟି ନିଜ ନିଜର ଅନ୍ତିମ ରୂପରେ ପୂରଣ ହେବା ପାଇଁ ଅପେକ୍ଷା କରିଛି। ଏଥି ପାଇଁ ଆନ୍ଦୋଳନରେ ଯୋଗ ଦେବା ସ୍ୱାଧୀନତାର ସମସ୍ତ ସେବକମାନଙ୍କର ପ୍ରଥମ କର୍ତ୍ତବ୍ୟ ଓ ଏହି ଉଦ୍ଦେଶ୍ୟକୁ ଦୃଷ୍ଟିରେ ରଖି କାର୍ଯ୍ୟକ୍ରମ ପ୍ରସ୍ତୁତ କରିବା ଆବଶ୍ୟକ। ଏହାର ରୂପରେଖ ନିମ୍ନରେ ଦିଆ

ଯାଉଛି ଏବଂ ତାହାର ପ୍ରତ୍ୟେକ ଅନୁଭବ ସମ୍ପର୍କୀତ ମତାମତ ଅନୁସୂଚୀ 'କ' ଓ 'ଖ'[୪] ରେ ଲିଖିତ ହୋଇଛି।

କର୍ମକର୍ତ୍ତାଙ୍କର ସବୁଠୁଁ ପ୍ରଥମ ଦାୟିତ୍ୱ ହେଲା ଜନଗଣଙ୍କୁ ଲଢୁଆ କାମ ପାଇଁ ପ୍ରସ୍ତୁତ କରିବା ତଥା ଲଢ଼େଇ ପାଇଁ ପଠେଇବା। ଆମମାନଙ୍କୁ ଅନ୍ଧବିଶ୍ୱାସ, କଳ୍ପନା, ଧାର୍ମିକତା ଅବା ଉଦାସିନତା ସମ୍ପର୍କୀତ ଆଦର୍ଶଗୁଡ଼ିକ ସହ ଖେଳିବାର କୌଣସି ଆବଶ୍ୟକତା ନାହିଁ। ଆମେ ଲୋକଙ୍କ ନିକଟରେ କେବଳ ପିଆଜ ସାଙ୍ଗରେ ରୋଟିର ପ୍ରତିଶ୍ରୁତି ହିଁ ଦେବାନି। ପ୍ରତିଶ୍ରୁତିଗୁଡ଼ିକ ସମ୍ପୂର୍ଣ୍ଣ ତଥା ବାସ୍ତବ ହେବ। ଏହା ଉପରେ ଆମେ ନିଷ୍ଠାର ସହ ସ୍ପଷ୍ଟ ରୂପେ ଆଲୋଚନା କରିବା। ଆମେ କେବେ ବି ସେମାନଙ୍କ ମନରେ ଭ୍ରମଭ୍ରାନ୍ତି ଭିଡ଼ କରିବାକୁ ଦେବାନି। ବିପ୍ଳବ ହେବ ଜନଗଣଙ୍କ ପାଇଁ। କେତେକ ସ୍ପଷ୍ଟ ନିର୍ଦ୍ଦେଶ ଏପରି ହେବ:

√ ସାମନ୍ତବାଦର ଅନ୍ତ।

√ କୃଷକମାନଙ୍କର ଋଣର ସମାପ୍ତି।

√ ବିପ୍ଳବୀ ରାଷ୍ଟ୍ର ତରଫରୁ ଜମିର ଜାତୀୟକରଣ କରାଯିବ ଯେପରି ଭୂ-ସଂସ୍କାର କରାଯାଇ ପାରିବ, ଭାଗ ଚାଷ ସ୍ଥାପନା କରାଯାଇ ପାରିବ।

√ ରହିବା ପାଇଁ ଘରର ଗ୍ୟାରେଣ୍ଟି।

√ ଚାଷୀଙ୍କ ଠାରୁ ନିଆ ଯାଉଥିବା ସମସ୍ତ ଖର୍ଚ୍ଚ ବନ୍ଦ କରାଯିବ ଓ କେବଳ ଗୋଟିଏ ସ୍ତରର ଭୂମି କର ନିଆଯିବ।

√ କାରଖାନାଗୁଡ଼ିକର ଜାତୀୟକରଣ ଓ ଗ୍ରାମାଞ୍ଚଳରେ କାରଖାନା ସ୍ଥାପନ।

√ ସାର୍ବଜନୀନ ଶିକ୍ଷା।

√ ଆବଶ୍ୟକ ଅନୁସାରେ କାମ କରିବାର ସମୟରେ କାଟତି।

ଜନଗଣ ଏମିତି କାର୍ଯ୍ୟକ୍ରମ ପାଇଁ ନିଶ୍ଚିତ ରୂପେ ସ୍ୱୀକୃତି ଦେବେ। ଏହି ସମୟରେ ସବୁଠୁଁ ଜରୁରି କାମ ଏୟା ଯେ ଆମେ ଲୋକଙ୍କ ପାଖରେ ପହଞ୍ଚିବା। ଗୋଟିଏ ପାଖରୁ ଥପା ଯାଇଥିବା ଅଜ୍ଞାନତା ଏବଂ ଅନ୍ୟ ପାଖରୁ ବୁଦ୍ଧିଜୀବୀମାନଙ୍କର ଉଦାସୀନତା ଶିକ୍ଷିତ ବିପ୍ଲବୀ ଓ ସେମାନଙ୍କର ଦାଆ-ହାତୁଡ଼ିବାଲା ଅଭାଗା ଅର୍ଦ୍ଧଶିକ୍ଷିତ ସାଥୀମାନଙ୍କ ମଝିରେ ଏକ ନକଲି ଦେବାଲ୍ ଠିଆ କରାଇଛନ୍ତି। ବିପ୍ଲବୀମାନଙ୍କୁ ନିଶ୍ଚିତ ରୂପେ ଏହି ଦେବାଲ୍‌କୁ ତଳେ ଶୁଆଇବାକୁ ପଡ଼ିବ। ଏଥି ପାଇଁ ନିମ୍ନଲିଖିତ କାମମାନ ନିହାତି ଜରୁରି।

√ କଂଗ୍ରେସ ମଞ୍ଚରୁ ଫାଇଦା ଉଠେଇବା।

√ ଟ୍ରେଡ ୟୁନିଅନଗୁଡ଼ିକୁ ଅକ୍ତିଆର କରିବା ଓ ନୂଆ ଟ୍ରେଡ ୟୁନିଅନ ଓ ସଂଗଠନଗୁଡ଼ିକୁ ଲଢୁଆ ରୂପରେ ସ୍ଥାପନା କରିବା।

√ ରାଜ୍ୟ ସ୍ତରର ୟୁନିଅନଗୁଡ଼ିକ ଗଢ଼ି ସେଗୁଡ଼ିକୁ ଉପରୋକ୍ତ ବିଷୟଗୁଡ଼ିକର ଭିତ୍ତିରେ ସଂଗଠିତ କରିବା।

√ ପ୍ରତ୍ୟେକ ସାମାଜିକ ଏବଂ ସ୍ୱୟଂସେବୀ ସଂଗଠନଗୁଡ଼ିକରେ (ଏପରିକି କୋଅପରେଟିଭ୍ ସୋସାଇଟିଗୁଡ଼ିକରେ), ଯାହା ଦ୍ୱାରା ଲୋକଙ୍କ ପାଖେ ପହଞ୍ଚିବା ପାଇଁ ସୁଯୋଗ ମିଳେ, ଗୁପ୍ତ ରୂପରେ ପ୍ରବେଶ କରି ସେଗୁଡ଼ିକର କାରବାରକୁ ଏପରି ଭାବରେ ପରିଚାଳିତ କରିବା ପାଇଁ ଚେଷ୍ଟା କରାଯିବ ଯେପରି କି ଅସଲ ଅଭିପ୍ରାୟ ଓ ଉଦ୍ଦେଶ୍ୟଗୁଡ଼ିକୁ ଆଗକୁ ବଢ଼େଇ ନିଆଯାଇ ପାରିବ।

√ ହସ୍ତଶିଳ୍ପୀମାନଙ୍କର ସମିତି, ମଜଦୁର ଓ ବୌଦ୍ଧିକ କାମ କରିବା ଲୋକମାନଙ୍କର ୟୁନିଅନ ପ୍ରତି ଯାଗାରେ ସ୍ଥାପନ କରିବାକୁ ହେବ।

ଏଗୁଡ଼ିକ ହେଉଛି କିଛି ବାଟ ଯାହା ଦ୍ୱାରା ପଢ଼ାଲେଖା ଟ୍ରେନିଂ ପ୍ରାପ୍ତ ବିପ୍ଲବୀମାନେ ଲୋକଙ୍କ ପାଖରେ ପହଞ୍ଚି ପାରିବେ। ଆଉ ଥରେ ପହଞ୍ଚି

ଗଲେ ତ ଟ୍ରେନିଂ ଜରିଆରେ ଲୋକମାନେ ନିଜର ଅଧିକାରଗୁଡ଼ିକୁ ଉତ୍ସାହପୂର୍ବକ ଅନୁମୋଦନ କରି ପାରିବେ ଓ ପୁଣି ହର୍‌ତାଳ ତଥା କାମ ବନ୍ଦ ସାହାଯ୍ୟରେ ଲଢୁଆ ଜବାବ ଦେଇ ପାରିବେ।

ଲୋକଙ୍କ ପାଖରେ ପହଞ୍ଚିବା ଓ ସେମାନଙ୍କୁ ସକ୍ରୀୟ କରିବା ପ୍ରସ୍ତୁତିରେ ହିଁ ବିପ୍ଳବୀମାନଙ୍କର କର୍ମଠ ଗୋଷ୍ଠୀର ମୂଖ୍ୟ ଦାୟିତ୍ୱ ନିହିତ ଥାଏ। ଏଇ ବିପ୍ଳବୀମାନେ ହିଁ ସେହି ଗତିଶୀଳ ଦୃଢ଼ ବିଚାରର ମଣିଷ ଯେଉଁମାନେ ରାଷ୍ଟ୍ରକୁ ଲଢୁଆ ଜୀବନୀ ଶକ୍ତି ଦେବେ। ଯେମିତି ଯେମିତି ପରିସ୍ଥିତି ପାକଳ ହେଉଥିବ, ଏହି ବିପ୍ଳବୀ ବୁଦ୍ଧିଜୀବୀମାନଙ୍କୁ (ଯେଉଁମାନେ ବୁର୍ଜୁଆ ତଥା ପେଟି-ବୁର୍ଜୁଆ ଶ୍ରେଣୀଗୁଡ଼ିକରୁ ଆସିଥାନ୍ତି ଓ କିଛି କାଳ ପାଇଁ ସେହି ଶ୍ରେଣୀଗୁଡ଼ିକରୁ ଆସୁଥିବେ ବି, କିନ୍ତୁ ଯେଉଁମାନେ ଏହି ଶ୍ରେଣୀଗୁଡ଼ିକର ପରମ୍ପରାଠୁଁ ନିଜନିଜକୁ ଅଲଗା କରି ଦେଇଥିବେ, ସେମାନଙ୍କୁ) ନେଇ ବିପ୍ଳବୀ ପାର୍ଟି ଗଢ଼ି ଉଠିବ ଏବଂ ପୁଣି ଏମାନଙ୍କୁ କେନ୍ଦ୍ର କରି ଅଧିକରୁ ଅଧିକ ଶ୍ରମିକ-ଚାଷୀ ତଥା ଛୋଟ ଛୋଟ ଆଦିବାସୀ ରାଜନୈତିକ କର୍ମକର୍ତ୍ତା ଯୋଗ ଦେଉଥିବେ। କିନ୍ତୁ ମୁଖ୍ୟ ରୂପରେ ଏହା ବିପ୍ଳବୀ ବୁଦ୍ଧିଜୀବୀ, ସ୍ତ୍ରୀ ଓ ପୁରୁଷଙ୍କର ପାର୍ଟି ହେବ।

ଏହି ପାର୍ଟିର ମୁଖ୍ୟ ଦାୟିତ୍ୱ ଏହା ହେବ ଯେ ଏହା ଯୋଜନା କରିବ, ତାକୁ କାର୍ଯ୍ୟକାରୀ କରିବ, ପ୍ରୋପାଗାଣ୍ଡା ବା ପ୍ରଚାର କରିବ, ଅଲଗା ଅଲଗା ୟୁନିଅନଗୁଡ଼ିକରେ କାମ ଆରମ୍ଭ କରି ସେଗୁଡ଼ିକୁ ଏକଜୁଟ୍ କରିବ। ଅନେକ ସଂଘବଦ୍ଧ ଆକ୍ରମଣର ଯୋଜନା କରିବ, ସେନା ଓ ପୁଲିସ୍‌କୁ ବିପ୍ଳବ ସପକ୍ଷବାଦୀ କରିବ ତଥା ସେମାନଙ୍କର ସହାୟତା ବା ନିଜର ଅନ୍ୟ ଶକ୍ତି ଦ୍ୱାରା ବିଦ୍ରୋହାତ୍ମକ ବା ଆକ୍ରମଣାତ୍ମକ ଚେହେରା ନେଇ ବିପ୍ଳବୀ ଟକ୍କର ପାଇଁ ପରିସ୍ଥିତି ସୃଷ୍ଟି କରିବ। ଲୋକମାନଙ୍କୁ ବିପ୍ଳବ ପାଇଁ ପ୍ରଯତ୍ନଶୀଳ କରେଇବ, ସମୟ ପଡ଼ିଲେ ନିର୍ଭିକତା ସହ ନେତୃତ୍ୱ ଦେବ।

ବାସ୍ତବରେ ଏମାନେ ହିଁ ଆନ୍ଦୋଳନର ବୁଦ୍ଧିକେନ୍ଦ୍ର। ତେଣୁକରି ସେମାନଙ୍କ ପାଇଁ ଦୃଢ଼ ଚରିତ୍ରର ଆବଶ୍ୟକତା ରହିଛି। ଅର୍ଥାତ୍ ବିପ୍ଳବ ପଥରେ ପ୍ରଥମେ ପ୍ରଥମେ ପାଦ ଥୋଇବା ଲୋକଙ୍କୁ ନେତୃତ୍ୱ ଦେଇ ପାରୁଥିବେ, ବିପ୍ଳବକୁ ମଧ୍ୟ ନେତୃତ୍ୱ ଦେଇ ପାରୁଥିବେ, ସେହି କ୍ଷମତା ରହିବା ଆବଶ୍ୟକ। ରାଜନୈତିକ, ଆର୍ଥିକ ଓ ଐତିହାସିକ ସମସ୍ୟା, ସାମାଜିକ ଝୁଙ୍କ, ପ୍ରଗତିଶୀଳ ବିଜ୍ଞାନ, ଯୁଦ୍ଧର ନୂଆ ନୂଆ ବୈଜ୍ଞାନିକ ଉପାୟ ଓ ତାର କଳା, ଇତ୍ୟାଦି ବିଷୟରେ ଶୃଙ୍ଖଳିତ ରୂପେ କରା ଯାଇଥିବା ଗଭୀର ଅଧ୍ୟୟନ ସେମାନଙ୍କର ଜ୍ଞାନର ଭିତ୍ତି ହେବା ଉଚିତ। ପରିଶ୍ରମୀ ବୁଦ୍ଧିଜୀବୀ ଓ ପରିଶ୍ରମୀ କର୍ମକର୍ତ୍ତାମାନେ ହିଁ ବିପ୍ଳବର ଜନ୍ମଦାତା ହୁଅନ୍ତି। ଦୁର୍ଭାଗ୍ୟବଶତଃ ଭାରତୀୟ ବିପ୍ଳବର ବୌଦ୍ଧିକ ପକ୍ଷ ସର୍ବଦା ଦୁର୍ବଳ ରହି ଆସିଛି। ତେଣୁ ବିପ୍ଳବର ନିତାନ୍ତ ଜରୁରି ବିଷୟଗୁଡ଼ିକ ତଥା କରିଥିବା କାମର ପ୍ରଭାବ ପ୍ରତି ଧ୍ୟାନ ଦିଆଯାଉ ନଥିଲା। ଏଣୁ ଅଧ୍ୟୟନ-ମନନକୁ ଜଣେ ବିପ୍ଳବୀ ନିଜର ପବିତ୍ର ଦାୟିତ୍ୱ ଭାବେ ଗ୍ରହଣ କରିବା ଉଚିତ।

ଏହା ସ୍ପଷ୍ଟ ଯେ କେତେକ ବିଶେଷ ବ୍ୟାପାରରେ ପାର୍ଟି ଖୁଲ୍ଲମ୍‌ଖୁଲା କାମ କରି ପାରେ। ଯେତେ ଦୂର ସମ୍ଭବ ପାର୍ଟି ଗୋପନୀୟ ହେବା ଉଚିତ ନୁହେଁ। ଏଥିରେ ସନ୍ଦେହ ରହିବନି ଓ ପାର୍ଟିକୁ ଶକ୍ତି ଓ ପ୍ରତିଷ୍ଠା ମିଳିବ। ପାର୍ଟିକୁ ବହୁତ ବଡ଼ ଦାୟିତ୍ୱ ପାଳନ କରିବାକୁ ହେବ। ତେଣୁ ସୁବିଧା ଦୃଷ୍ଟିରୁ ପାର୍ଟିର କାମକୁ କେତେକ କମିଟି ମଧ୍ୟରେ ବଣ୍ଟା ଯାଇପାରେ ଯେମିତି ସେଗୁଡ଼ିକ ନିଜନିଜର କ୍ଷେତ୍ରର ବିଶେଷ କାମକୁ ଦେଖାଚାହାଁ କରି ପାରିବେ। କାମର ଏହି ବିଭାଜନ ସମୟର ଆବଶ୍ୟକତା ଅନୁସାରେ ପରିବର୍ତ୍ତନୀୟ ହେବା ଉଚିତ। ଜଣେ ସଦସ୍ୟର ଯୋଗ୍ୟତା କଳନା କରି ତାଙ୍କୁ କୌଣସି ସ୍ଥାନୀୟ କମିଟିରେ କାମ ଦିଆ ଯାଇପାରେ। ସ୍ଥାନୀୟ କମିଟି ପ୍ରାଦେଶିକ ବୋର୍ଡ଼ର

ଅଧୀନ ହେବ ଓ ବୋର୍ଡ଼ ସୁପ୍ରିମ୍ କାଉନ୍ସିଲ୍‌ର ଅଧିନ। ପ୍ରଦେଶ ଭିତରେ ସମ୍ପର୍କର କାମ ପ୍ରାଦେଶିକ ବୋର୍ଡ଼ର ଅଧୀନ ହେବ। ସମସ୍ତ ପ୍ରକାର ବିକ୍ଷିପ୍ତ କାମ ଓ ବିଭେଦକାରୀ ତତ୍ତ୍ୱକୁ ବନ୍ଦ କରିବା ଆବଶ୍ୟକ। କିନ୍ତୁ ଅଧିକ କେନ୍ଦ୍ରୀକରଣର ସମ୍ଭାବନା ନାହିଁ। ତେଣୁ ବର୍ତ୍ତମାନ ତା ପାଇଁ ଚେଷ୍ଟା କରିବା ମଧ୍ୟ ଉଚ଼ିତ ନୁହେଁ।

ସମସ୍ତ ସ୍ଥାନୀୟ କମିଟିଗୁଡ଼ିକ ପରସ୍ପର ସହ ସମ୍ପର୍କ ରଖି କାମ କରିବା ଉଚ଼ିତ ଓ ଗୋଟିଏ ସ୍ଥାନୀୟ କମିଟିରେ ଅନ୍ୟ ସ୍ଥାନୀୟ କମିଟିର ଜଣେ ସଭ୍ୟ ରହିବା ଉଚ଼ିତ। କମିଟି ଛୋଟ, ଐକ୍ୟବଦ୍ଧ ଓ ଦକ୍ଷ ହେବା ଉଚ଼ିତ। ଏହାକୁ ତର୍କ-ବିତର୍କ-କ୍ଲବ୍‌ରେ ପରିଣତ ହେବା ପାଇଁ ଦେବା ଉଚ଼ିତ ନୁହେଁ।

ଏଥି ପାଇଁ ପ୍ରତ୍ୟେକ କ୍ଷେତ୍ରରେ ବିପ୍ଳବୀ ପାର୍ଟି ଏହି ଧରଣର ହେଉ:

√ **ସାଧାରଣ କମିଟି:** ସଭ୍ୟ ସଂଗ୍ରହ, ସେନା ମଧ୍ୟରେ ପ୍ରଚ଼ାର, ସାଧାରଣ ନୀତି, ସଂଗଠନ, ଗଣ ସଂଗଠନ ସହ ସମ୍ପର୍କ (ପରିଶିଷ୍ଟ କ)[୫]।

√ **ବିତ୍ତ କମିଟି:** କମିଟିରେ ମହିଳା ସଦସ୍ୟମାନଙ୍କର ସଂଖ୍ୟା ଅଧିକ ହୋଇପାରେ। ଏହି କମିଟିର ମୁଣ୍ଡ ଉପରେ ସବୁଠୁଁ ମୁଷ୍କିଲ୍ କାମ ଠୁଁ ବଳି ଆହୁରି ଅଧିକ ମୁଷ୍କିଲ୍ କାମ ଲଦା ଯାଇପାରେ। ଏଣୁ ସମସ୍ତେ ଏହାକୁ ଖୋଲା ହୃଦୟରେ ସାହାଯ୍ୟ କରିବା ଆବଶ୍ୟକ। ଧନର ସ୍ରୋତ ପ୍ରାଥମିକତା ଅନୁସାରେ ହେବ। ସ୍ୱଇଚ୍ଛା ଚାନ୍ଦା, ବଳପୂର୍ବକ ଚାନ୍ଦା (ସରକାରୀ ଧନ), ବିଦେଶୀ ପୁଞ୍ଜିପତି ଅବା ବ୍ୟାଙ୍କ୍, ବିଦେଶରେ ରହୁଥିବା ଲୋକଙ୍କର ଦେଶୀ ବ୍ୟକ୍ତିଗତ ସମ୍ପତ୍ତି ଦଖଲ ଅବା ବେଆଇନ ଉପାୟ, ଯେମିତି ଅମାନତ ହରଣ। (ଶେଷ ଦୁଇଟି ବିଷୟ ଆମ ନୀତିର ବିରୋଧୀ ଓ ପାର୍ଟିର କ୍ଷତି କରେ, ତେଣୁ ତାକୁ ଆଉ ଅଧିକ ପ୍ରୋତ୍ସାହନ ଦେବା ଉଚ଼ିତ ନୁହେଁ।)

√ **କାରବାର କମିଟି:** ଏହା ଅନ୍ତର୍ଘାତୀ କାମ, ଅସ୍ତ୍ରଶସ୍ତ୍ର ସଂଗ୍ରହ ଓ ବିଦ୍ରୋହ ସମ୍ପର୍କୀତ ଟ୍ରେନିଂ ଦେବା ପାଇଁ ଏକ ଗୁପ୍ତ କମିଟି।

√ **ସ୍ତ୍ରୀ କମିଟି:** ଯଦ୍ୟପି ଏମିତି ତ ଦେଖିବା ପାଇଁ ସ୍ତ୍ରୀ-ପୁରୁଷ ମଧ୍ୟରେ କୌଣସି ଭେଦଭାବ ରଖା ଯାଉନି, ତଥାପି ସୁରକ୍ଷା ଓ ସୁବିଧା ପାଇଁ ପାର୍ଟିକୁ ଏମିତି କମିଟିର ଆବଶ୍ୟକତା ରହିଛି, ଯେମିତି ସେ ସମସ୍ତ ସଦସ୍ୟମାନଙ୍କର ସମ୍ପୂର୍ଣ୍ଣ ଦାୟିତ୍ୱ ବହନ କରି ପାରିବ। ସେମାନଙ୍କୁ ବିତ୍ତ କମିଟିର ପୁରା ଭାର ଦିଆଯାଇ ପାରେ ଏବଂ ସାଧାରଣ କମିଟିର ଦାୟିତ୍ୱ ମଧ୍ୟ ଅନେକାଂଶରେ ଦିଆଯାଇ ପାରେ। କାରବାର କମିଟି ପାଇଁ ଏମାନଙ୍କ ମଧ୍ୟରେ ଯଥେଷ୍ଟ ସମ୍ଭାବନା ନାହିଁ। ଏମାନଙ୍କର ପ୍ରାରମ୍ଭିକ ଦାୟିତ୍ୱ ହେବ ସ୍ତ୍ରୀମାନଙ୍କୁ ବିପ୍ଳବୀ କରିବା ଓ ସେମାନଙ୍କ ମଧ୍ୟରୁ ପ୍ରତ୍ୟକ୍ଷ ସେବା ପାଇଁ ସକ୍ରୀୟ ସଭ୍ୟ ସଂଗ୍ରହ କରିବା।

ଉପରେ କୁହା ଯାଇଥିବା କାର୍ଯ୍ୟକ୍ରମରୁ ଏହି ନିର୍ଯ୍ୟାସ ବାହାର କରିବା ସମ୍ଭବ ଯେ ବିପ୍ଳବ ବା ସ୍ୱାଧୀନତା ପାଇଁ କୌଣସି ଛୋଟିଆ ରାସ୍ତା ନାହିଁ। 'ଏହା କୌଣସି ସୁନ୍ଦରୀ ଭଳି ସକାଳୁ ସକାଳୁ ଆମକୁ ଦେଖା ଦେବନି' ଏବଂ ଯଦି ଏଭଳି ହେବ ତେବେ ସେହି ଦିନଟି ଆମ ପାଇଁ ବଡ଼ ଅଶୁଭ ଦିନ ହେବ। କୌଣସି ବୁନିଆଦି କାମ ନ ହୋଇ, ଲଢୁଆ ଜନତା ନଥାଇ, କୌଣସି ପାର୍ଟି ନଥାଇ ଯଦି ବିପ୍ଳବ ସବୁ ଦିଗରୁ ପ୍ରସ୍ତୁତ ହୋଇଗଲା, ତେବେ ତାହା ଏକ ଅସଫଳତା ହେବ।

ଏଣୁ ଆମେ ନିଜକୁ ସଜାଡ଼ିବାକୁ ହେବ। ଆମକୁ ସର୍ବଦା ଏହା ମନେ ରଖିବାକୁ ହେବ ଯେ ପୁଞ୍ଜିବାଦୀ ବ୍ୟବସ୍ଥା କଟକଟ ହେଉଛି ଓ ବିନାଶ ଆଡ଼କୁ ମୁହାଁଇଛି। ଦୁଇ ବା ତିନୋଟି ବର୍ଷରେ ହୁଏତ ଏହାର ବିନାଶ ହୋଇଯିବ। ଯଦି ଆଜି ବି ଆମର ଶକ୍ତି ବିଚ୍ଛୁରିତ ହୋଇ ରହିବ ଓ ବିପ୍ଳବୀ ଶକ୍ତିଗୁଡ଼ିକ

ଏକଜୁଟ ହୋଇ ଅଗ୍ରସର ହୋଇ ପାରିବେନି, ତେବେ ଏପରି ସଂକଟ ଆସିବ ଯାହାକୁ ସମ୍ଭାଳିବା ପାଇଁ ଆମେ ପ୍ରସ୍ତୁତ ହୋଇ ନଥିବା। ଆସନ୍ତୁ, ଆମେ ଏହି ଚେତାବନୀକୁ ସ୍ୱୀକାର କରିବା ଓ ଦୁଇ ବା ତିନୋଟି ବର୍ଷରେ ବିପ୍ଳବ ଆଡ଼କୁ ଅଗ୍ରସର ହେବା ପାଇଁ ଯୋଜନା କରିବା।

## ଟିପଣୀ

୧,୨ ଓ ୩ : ମୂଳଲେଖାରେ କେତେକ ପଦ ନାହିଁ ଅବା ଅସ୍ପଷ୍ଟ। ତେଣୁ ବାକ୍ୟର ଅର୍ଥ ପୂରଣ ପାଇଁ ଯାହାକୁ ସମ୍ଭାବ୍ୟ ବୋଲି ମନେ କରାଗଲା, ତାକୁ ବନ୍ଦନୀ ମଧ୍ୟରେ ଦିଆଯାଇଛି।

୪ ଓ ୫ : ଏହି ପରିଶିଷ୍ଟଗୁଡ଼ିକ ଅନୁବାଦକଙ୍କ ଦୃଷ୍ଟିକୁ ଆସିନି, ତେଣୁ ଏଠାରେ ଦିଆଯାଇ ନାହିଁ।

# ସହିଦ ଭଗତ ସିଂ

# ସାମ୍ପ୍ରଦାୟିକ ଦଙ୍ଗା ଓ ତାର ପ୍ରତିକାର

**ଭାଷାନ୍ତର**

## ଅଧ୍ୟାପକ ନୀଳମଣି ସାହୁ

[ଏହି ଲେଖାଟି ***ମାତୃଭାଷା*** (୧୫-୮-୨୦୦୭), ***ସମଦୃଷ୍ଟି*** (ଭାଗ ୨, ସଂଖ୍ୟା ୭, ୧୬-୩୦ ସେପ୍ଟେମ୍ବର ୨୦୦୭) ***ସ୍ୱତନ୍ତ୍ରବାର୍ତ୍ତା*** (୨୦-୧୧-୨୦୦୭) ରେ ପ୍ରକାଶିତ ହୋଇଛି। ସମ୍ପାଦକମାନଙ୍କ ନିକଟରେ ମୋର କୃତଜ୍ଞତା ଜ୍ଞାପନ କରୁଛି। ୨୦୧୭ ମସିହାରେ ସହିଦ ଭଗତ ସିଂ ବିଚାର ମଞ୍ଚ ଦ୍ୱାରା ପ୍ରକାଶିତ ***ଅଛୁଆଁ ସମସ୍ୟା ଓ ଅନ୍ୟାନ୍ୟ*** ପୁସ୍ତିକାରେ ମଧ୍ୟ ପ୍ରକାଶିତ ହୋଇଛି।]

**(୧୯୧୯ର ଜାଲିଆଁୱାଲା ବାଗ୍ ହତ୍ୟାକାଣ୍ଡ ପରେ ବ୍ରିଟିଶ୍ ସରକାର ସାମ୍ପ୍ରଦାୟିକ ଦଙ୍ଗାର ପ୍ରଚାର ପ୍ରସାର ଭଲ ଭାବେ କରିବା ଆରମ୍ଭ କରିଦେଲା। ତାହାର ପ୍ରଭାବରେ ୧୯୨୪ରେ କୋହାଟରେ ଅତୀବ ଅମାନବୀୟ ଢଙ୍ଗରେ ହିନ୍ଦୁ-ମୁସ୍‌ଲିମ୍ ଦଙ୍ଗା ହେଲା। ତା' ପରେ ଦେଶର ରାଜନୈତିକ ଚିନ୍ତା ରାଜ୍ୟରେ ସାମ୍ପ୍ରଦାୟିକ ଦଙ୍ଗାକୁ ନେଇ ଲମ୍ବା ବାଦାନୁବାଦ ଚାଲିଲା। ସାମ୍ପ୍ରଦାୟିକ ଦଙ୍ଗାର ଅବସାନ କରିବା**

**ଆବଶ୍ୟକତା ସମସ୍ତେ ତ ଅନୁଭବ କଲେ, କିନ୍ତୁ କଂଗ୍ରେସ ନେତାମାନେ ହିନ୍ଦୁ-ମୁସ୍‌ଲିମ୍ ନେତାମାନଙ୍କ ମଧ୍ୟରେ ଏକ ରାଜିନାମା ଲେଖାଇ ଦଙ୍ଗା ବନ୍ଦ କରିବାର ଯତ୍ନ କଲେ।**

**ଭାରତରେ ବୈପ୍ଳବିକ ଆନ୍ଦୋଳନ ସହ ଯେଉଁମାନେ ସଂଶ୍ଳିଷ୍ଟ ଥିଲେ ସେମାନେ ମଧ୍ୟ ଏହି ସମସ୍ୟାର ସମାଧାନ ପାଇଁ ଚିନ୍ତା କରୁଥିଲେ। ଭଗତ ସିଂ ଓ ତାଙ୍କର ସାଥୀମାନେ ସେତେବେଳେ ଯାହା ଚିନ୍ତା କରିଥିଲେ ଏହି ଲେଖାଟି ସେହି ଚିନ୍ତାର ଫଳ। ଏହା ଜୁନ୍, ୧୯୨୮ରେ *କିରତୀ* ପତ୍ରିକାରେ ପ୍ରକାଶିତ ହୋଇଥିଲା।)**

ଭାରତବର୍ଷର ଅବସ୍ଥା ବର୍ତ୍ତମାନ ଅତ୍ୟନ୍ତ ଦୟନୀୟ। ଗୋଟିଏ ଧର୍ମର ଅନୁଗାମୀମାନେ ଅନ୍ୟାନ୍ୟ ଧର୍ମର ଅନୁଗାମୀମାନଙ୍କର ପ୍ରାଣାନ୍ତକ ଶତ୍ରୁ ହୋଇଛନ୍ତି। ଏବେ ଏମିତି ହୋଇଛି ଯେ ଗୋଟିଏ ଧର୍ମରେ ରହିବା ଅର୍ଥ ଅନ୍ୟାନ୍ୟ ଧର୍ମର ଅନ୍ଧ ଶତ୍ରୁ ହେବା। ଯଦି ଏହି କଥାରେ ବର୍ତ୍ତମାନ ବିଶ୍ୱାସ ହେଉନି, ତେବେ ଲାହୋରରେ ହୋଇଥିବା ସଦ୍ୟ ଦଙ୍ଗାକୁ ଦେଖି ନିଅନ୍ତୁ। ମୁସଲମାନମାନେ କେଉଁ ଭାବରେ ନିର୍ଦ୍ଦୋଷ ଶିଖ, ହିନ୍ଦୁମାନଙ୍କୁ ମାରିଛନ୍ତି ଓ କେମିତି ଶିଖମାନେ ମଧ୍ୟ ଯେଉଁଠି ବଳ ପାଇଛି କୌଣସି ସୁଯୋଗ ହାତଛଡ଼ା କରି ନାହାଁନ୍ତି। ଅମୁକ ଲୋକ ଦୋଷ କରିଥିବା ହେତୁ ଏହି ହାଣକାଟ ହୋଇନି, ହୋଇଛି ଅମୁକ ଲୋକ ହିନ୍ଦୁ ହୋଇଥିବା ଯୋଗୁଁ ଅବା ମୁସଲମାନ ଅବା ଶିଖ ହୋଇଥିବା ଯୋଗୁଁ। ବାସ୍, କୌଣସି ବ୍ୟକ୍ତିର ଶିଖ ବା ହିନ୍ଦୁ ହେବାଟା ହିଁ ଯଥେଷ୍ଟ ଥିଲା ମୁସଲମାନ ହାତରୁ ହାଣ ଖାଇବା ପାଇଁ, ଠିକ୍ ସେମିତି କୌଣସି ବ୍ୟକ୍ତିର ମୁସଲମାନ ହେବାଟା ହିଁ ଏକବାରେ ଯୁକ୍ତିସଙ୍ଗତ

ଥିଲା ତାର ଜୀବନ ନେବା ପାଇଁ। ଯଦି ସ୍ଥିତି ଏୟା ତେବେ ଈଶ୍ୱର ହିଁ ଭାରତର ମାଲିକ।

ଏପରି ପରିସ୍ଥିତିରେ ଭାରତର ଭବିଷ୍ୟତ ଅତ୍ୟନ୍ତ ଅନ୍ଧକାରମୟ ଦେଖା ଯାଉଛି। ଏହି 'ଧର୍ମଗୁଡ଼ିକ' ଭାରତର ଭେଳା ବୁଡ଼ଉଛନ୍ତି। ଏବଂ ଏହି ଧାର୍ମିକ ଦଙ୍ଗା ଭାରତବର୍ଷର ପିଛା ଧରିବା କେବେ ଛାଡ଼ିବ ବର୍ତ୍ତମାନ ଜଣା ପଡ଼ୁନାହିଁ। ସଂସାରର ନଜରରେ ଭାରତର ବଦନାମ କରୁଛି ଏହି ଦଙ୍ଗା। ଆମେ ଦେଖୁଛୁ ଯେ ଏହି ଅନ୍ଧବିଶ୍ୱାସର ସ୍ରୋତରେ ସମସ୍ତେ ଭାସୁଛନ୍ତି। କୌଣସି ବିରଳା ହିଁ ହିନ୍ଦୁ, ମୁସଲମାନ ବା ଶିଖ ହୋଇ ବି ମୁଣ୍ଡକୁ ଥଣ୍ଡା ରଖିଥାଏ, ବାକି ସମସ୍ତେ ଠେଙ୍ଗା-ବାଡ଼ି, ଖଣ୍ଡା-ଛୁରୀ ଧରି ପରସ୍ପରର ମୁଣ୍ଡ ଫଟେଇ ମରନ୍ତି। ବାକି ଯେଉଁ କେତେକ ବଳକାବଳକି ଥାଆନ୍ତି ସେମାନଙ୍କ ମଧ୍ୟରୁ କେତେକ ଫାଶିକାଠ ଚଢ଼ନ୍ତି ଓ ଆଉ କେତେକଙ୍କୁ ଜେଲ ମଧ୍ୟକୁ ଫୋପାଡ଼ି ଦିଆ ଯାଏ। ଏତେ ରକ୍ତପାତ ହେବା ପରେ ଏହି 'ଧାର୍ମିକ ଲୋକମାନଙ୍କ' ଉପରେ ଇଂରେଜ ସରକାରଙ୍କ ଲାଠି ବରଷେ। ତେବେ ଯାଇ ଏମାନଙ୍କ ମୁଣ୍ଡରେ ଥିବା ପୋକ ଶାନ୍ତ ହୁଅନ୍ତି।

ଯେତେ ଦୂର ଦେଖା ଯାଇଛି, ଏହି ଦଙ୍ଗା ପଛରେ ସାମ୍ପ୍ରଦାୟିକ ନେତା ଓ ଖବରକାଗଜବାଲାଙ୍କ ହାତ ଅଛି। ଏହି ସମୟରେ ଭାରତର ନେତାମାନେ ଏମିତି ପୋଖରୀ ପାଣି କରିଛନ୍ତି ଯେ ଚୁପ୍ ରହିଲେ ହିଁ ଭଲ। ସେହି ନେତାମାନେ ଯେଉଁମାନେ ଭାରତକୁ ସ୍ୱତନ୍ତ୍ର କରିବାର ଗୁରୁ ଭାର ନିଜନିଜର ମୁଣ୍ଡ ଉପରେ ଲଦି ହୋଇ ରହିଥିଲେ ଆଉ ଯେଉଁମାନେ 'ସମାନ ରାଷ୍ଟ୍ରୀୟତା', 'ସ୍ୱରାଜ-ସ୍ୱରାଜ' ଆଦି ନାରାକୁ ଗଳା ଫଟେଇ ରଡ଼ି କରି ମଧ୍ୟ

ଥିଲୁ ନଥିଲେ, ଆଜି ହୁଏତ ମୁହଁ ଲୁଚେଇ ଚୁପ୍‌ଚାପ୍ ବସିଛନ୍ତି ଅବା ଧର୍ମାନ୍ଧତାର ଏହି ସ୍ରୋତରେ ଭାସି ଯାଉଛନ୍ତି। ମୁହଁ ଲୁଚେଇ ବସିବା ଲୋକଙ୍କ ସଂଖ୍ୟା ବି କଣ କମ୍? କିନ୍ତୁ ଏପରି ନେତା ଯେଉଁମାନେ ସାମ୍ପ୍ରଦାୟିକ ଆନ୍ଦୋଳନ ସହ ଜଡ଼ିତ ହୋଇ ଯାଇଛନ୍ତି, ଏମିତି ମାଟି ଆଡ଼େଇଲେ ତ ଶହ ଶହ ସଂଖ୍ୟାରେ ବାହାରି ଆସୁଛନ୍ତି। ଯେଉଁ ନେତାମାନେ ଆନ୍ତରିକତା ସହ ସମସ୍ତଙ୍କର ଭଲ ଚାହୁଁଛନ୍ତି, ଏମିତି ତ ସଂଖ୍ୟାରେ ସେମାନେ ବହୁତ କମ୍, ତଥାପି ସାମ୍ପ୍ରଦାୟିକତାର ବଢ଼ି ଏତେ ପ୍ରବଳ ହୋଇଛି ଯେ ସେମାନେ ମଧ୍ୟ ଏହାକୁ ରୋକିପାରୁ ନାହାଁନ୍ତି। ଏମିତି ଲାଗୁଛି ଯେମିତି ଭାରତରେ ନେତୃତ୍ୱର ଦିବାଳିଆ ଝଣ୍ଡା ଉଡ଼ୁଛି।

ଅନ୍ୟ ଭଦ୍ରଲୋକମାନେ ଯେଉଁମାନେ ସାମ୍ପ୍ରଦାୟିକ ଦଙ୍ଗାଗୁଡ଼ିକରେ ଘିଅ ଢ଼ାଳି ବିଶେଷ ଭାବେ ଅଂଶଗ୍ରହଣ କରି ଆସୁଛନ୍ତି ସେମାନେ ହେଲେ ଖବରକାଗଜବାଲାମାନେ।

ଦିନ ଥିଲା ଯେତେବେଳେ ସମ୍ବାଦପତ୍ର ବ୍ୟବସାୟକୁ ଏକ ଶ୍ରେଷ୍ଠ ବ୍ୟବସାୟର ମାନ୍ୟତା ମିଳୁଥିଲା, କିନ୍ତୁ ଆଜି ସେ ବ୍ୟବସାୟ ଅତି ଗନ୍ଧିଆ ହୋଇ ପଡ଼ିଛି। ଏହି ଲୋକମାନେ ଜଣକୁ ଅନ୍ୟ ଜଣଙ୍କ ବିରୁଦ୍ଧରେ ଉସ୍କାଇବା ଭଳି ବଡ଼ ବଡ଼ ମୋଟା ମୋଟା ହେଡିଙ୍ଗ୍ ଦେଇ ଲୋକମାନଙ୍କର ଚିନ୍ତାକୁ ଉତ୍ତେଜିତ କରୁଛନ୍ତି ଏବଂ ପରସ୍ପରର ମୁଣ୍ଡକୁ ଫୁଟବଲ କରାଉଛନ୍ତି। ଗୋଟିଏ ଦୁଇଟି ଯାଗାରେ ନୁହେଁ, ଅନେକ ଯାଗାରେ ଏଥିପାଇଁ ଦଙ୍ଗା ହୋଇଛି ଯେ ସ୍ଥାନୀୟ ସମ୍ବାଦପତ୍ରଗୁଡ଼ିକ ଅତି ଉତ୍ତେଜନାପୂର୍ଣ୍ଣ ଲେଖା ଲେଖିଥିଲେ। ଏପରି

ଲେଖକ, ଯାହାର ହୃଦୟ ଓ ମନ ଉଭୟେ ଏପରି ଦିନରେ ବି ଶାନ୍ତ ରହେ, ବହୁତ କମ୍ ଅଛନ୍ତି।

ସମ୍ବାଦପତ୍ରଗୁଡ଼ିକର ଅସଲ କର୍ତ୍ତବ୍ୟ ହେଉଛି ଲୋକଙ୍କୁ ଶିକ୍ଷା ଦେବା, ସେମାନଙ୍କ ଭିତରୁ ସଂକୀର୍ଣ୍ଣତା ଦୂର କରିବା, ସାମ୍ପ୍ରଦାୟିକ ଭାବନା ହଟେଇବା, ପରସ୍ପର ମଧ୍ୟରେ ମିତ୍ରତା ବଢ଼େଇବା, ସୌହାର୍ଦ୍ଦ୍ୟପୂର୍ଣ୍ଣ ବାତାବରଣ ସୃଷ୍ଟି କରିବା, ଭାରତର ଯୌଥ ରାଷ୍ଟ୍ରୀୟତା ବନେଇ ରଖିବା। କିନ୍ତୁ ଏମାନେ ଅଜ୍ଞାନ ପ୍ରସାର, ସଂକୀର୍ଣ୍ଣତା ପ୍ରଚାର, ଲୋକଙ୍କୁ ସାମ୍ପ୍ରଦାୟିକ କରିବା, ସେମାନଙ୍କ ମଧ୍ୟରେ ଲଢ଼େଇ ଝଗଡ଼ା କରେଇବା ଓ ଭାରତର ଯୌଥ ରାଷ୍ଟ୍ରୀୟତାକୁ ନଷ୍ଟ କରିବାକୁ ହିଁ ମୁଖ୍ୟ କର୍ତ୍ତବ୍ୟ ରୂପେ ଗ୍ରହଣ କରିଛନ୍ତି। ଏହି କାରଣରୁ ଭାରତର ବର୍ତ୍ତମାନ ଦଶା ସମ୍ପର୍କରେ ଚିନ୍ତା କଲେ ଆଖିରୁ ରକ୍ତ ହିଁ ଲୁହ ଆକାରରେ ଗଡ଼ୁଛି ଓ ମନରେ ପ୍ରଶ୍ନ ଉଠୁଛି 'ଭାରତର କଣ ହେବ?'

ଯେଉଁ ଲୋକମାନେ ଅସହଯୋଗ ଦିନର ଉତ୍ସାହ, ଉଦ୍ଦିପନାକୁ ଜାଣିଛନ୍ତି, ସେମାନଙ୍କୁ ଏହି ସ୍ଥିତି ଦେଖି କାନ୍ଦ ମାଡ଼ୁଛି। କାହିଁ ସେ ଦିନ ଯେତେବେଳେ ସ୍ୱତନ୍ତ୍ରତାର ଝଲକ ସାମନାରେ ଦେଖା ଯାଉଥିଲା ଆଉ କାହିଁ ଆଜିର ଦିନ ଯେତେବେଳେ ସ୍ୱରାଜ୍ୟ ହିଁ ଏକ ସ୍ୱପ୍ନ ତୁଲ୍ୟ ହୋଇ ଯାଇଛି। ବାସ୍, ଏହା ହେଉଛି ତୃତୀୟ ଲାଭ ଯାହା ଏହି ଦଙ୍ଗାରୁ ଅତ୍ୟାଚାରୀମାନଙ୍କୁ ମିଳିଲା। ସେହି ଅମଲାତନ୍ତ୍ର — ଯାହାର ସ୍ଥିତି ପ୍ରତି ଏମିତି ବିପଦ ସୃଷ୍ଟି ହୋଇ ସାରିଥିଲା ଯେ ସେ ଆଜି ଯିବ, କାଲି ଯିବ ବୋଲି ଭାବୁଥିଲେ — ଆଜି

ନିଜର ଚେରକୁ ଏତେ ମଜବୁତ୍ କରି ସାରିଛି ଯେ ତାକୁ ହଲେଇବା ଆଉ କୌଣସି ମାମୁଲି କାମ ହୋଇ ରହିନି।

ଯଦି ଏହି ସାମ୍ପ୍ରଦାୟିକ ଦଙ୍ଗାଗୁଡ଼ିକର ମୂଳ ଖୋଜିବା ତେବେ ଏହାର କାରଣ ଆର୍ଥିକ ବୋଲି ଆମକୁ ଜଣା ପଡ଼ୁଛି। ଅସହଯୋଗର ଦିନମାନଙ୍କରେ ନେତା ଓ ସାମ୍ବାଦିକମାନେ ବହୁତ ବଳିଦାନ ଦେଇଛନ୍ତି। ସେମାନଙ୍କର ଆର୍ଥିକ ଅବସ୍ଥା ବିଗିଡ଼ି ଯାଇଥିଲା। ଅସହଯୋଗ ଆନ୍ଦୋଳନ ମନ୍ଥର ହୋଇଯିବା ପରେ ନେତାମାନଙ୍କ ଉପରେ ଅବିଶ୍ୱାସ ଭାବ ସୃଷ୍ଟି ହେଲା, ଯାହା ଫଳରେ ଆଜିକାଲିର ବହୁତ ସାମ୍ପ୍ରଦାୟିକ ନେତାମାନଙ୍କର ଧନ୍ଦା ନଷ୍ଟଭ୍ରଷ୍ଟ ହେଇଗଲା। ସଂସାରରେ ଯାହା ବି କାମ ହେଉଛି ତାର ଅନ୍ତରାଳରେ ପେଟର ପ୍ରଶ୍ନ ନିଶ୍ଚୟ ରହିଛି। କାର୍ଲ ମାର୍କ୍ସଙ୍କ ତିନୋଟି ବଡ଼ ସିଦ୍ଧାନ୍ତ ମଧ୍ୟରୁ ଏହା ଏକ ମୁଖ୍ୟ ସିଦ୍ଧାନ୍ତ ଅଟେ। ଏହି କାରଣାତ୍ମକ ସିଦ୍ଧାନ୍ତର ସତ୍ୟତା ପ୍ରମାଣିତ କରି ତବଲିଗ୍, ତନକିମ୍, ସୁଦ୍ଧି ଆଦି ସଂଗଠନମାନ ଆରମ୍ଭ ହୋଇଛି ଏବଂ ଏହି କାରଣରୁ ଆଜି ଆମର ଏହି ଦୁର୍ଦ୍ଦଶା ହୋଇଛି, ଯାହା ଅବର୍ଣ୍ଣନୀୟ।

ବାସ୍, ସମସ୍ତ ପ୍ରକାର ଦଙ୍ଗାର ପ୍ରତିକାର ଯଦି କାହା ଦ୍ୱାରା ହୋଇପାରେ ତେବେ ତାହା ଭାରତର ଆର୍ଥିକ ସ୍ଥିତିରେ ସଂସ୍କାର ଦ୍ୱାରା ହିଁ ହୋଇ ପାରିବ, କାରଣ ଭାରତର ସାଧାରଣ ଲୋକଙ୍କର ଆର୍ଥିକ ସ୍ଥିତି ଏତେ ଖରାପ ଯେ ଗୋଟିଏ ଲୋକ ଅନ୍ୟ ଗୋଟିଏ ଲୋକକୁ ଚାରଣିଟିଏ ଦେଇ ତାହା ଦ୍ୱାରା ଆଉ କାହାକୁ ଅପମାନିତ କରେଇ ପାରେ। ଭୋକ ଓ ଦୁଃଖରେ ଆତୁର ମଣିଷ ସବୁ ସିଦ୍ଧାନ୍ତକୁ ଥାକ ଉପରେ ଥୋଇ ଦିଏ। ସତ କଥା, ମରୁଥିବା ଲୋକ କଣ ବା ନ କରି ପାରେ!

କିନ୍ତୁ ବର୍ତ୍ତମାନ ସ୍ଥିତିରେ ଆର୍ଥିକ ସଂସ୍କାର ଆଣିବା ଅତ୍ୟନ୍ତ କଠିନ କଥା, କାରଣ ସରକାର ବିଦେଶୀ ଅଟେ ଓ ତାହା ଲୋକଙ୍କର ପରିସ୍ଥିତିକୁ ସୁଧାରିବା ପାଇଁ ଦେବନି। ଏଣୁ ଲୋକମାନେ ଅନ୍ୟ ସମସ୍ତ କଥାକୁ ପଛରେ ପକେଇ ମନ, ଧ୍ୟାନ, ପ୍ରାଣ ଦେଇ ଏହା ବିରୁଦ୍ଧରେ ଲାଗିବା ଆବଶ୍ୟକ ଏବଂ ଯେତେ ଦିନ ପର୍ଯ୍ୟନ୍ତ ସରକାର ନ ବଦଳିଛି, ଶାନ୍ତିରେ ନିଶ୍ୱାସ ମାରିବା ଉଚିତ ନୁହେଁ।

ଲୋକମାନଙ୍କୁ ପରସ୍ପର ମଧ୍ୟରେ ଲଢ଼ିବାରୁ କ୍ଷାନ୍ତ କରିବା ପାଇଁ ଶ୍ରେଣୀ ଚେତନାର ଆବଶ୍ୟକତା ରହିଛି। ଗରିବ ଶ୍ରମିକ ଓ କୃଷକମାନଙ୍କୁ ସ୍ପଷ୍ଟ ରୂପେ ବୁଝେଇ ଦେବା ଆବଶ୍ୟକ ଯେ ପୁଞ୍ଜିପତି ହିଁ ତୁମର ଅସଲ ଶତ୍ରୁ, ତେଣୁ ତୁମେମାନେ ସେମାନଙ୍କର ଷଡ଼ଯନ୍ତ୍ର ଠୁଁ ଦୂରେଇ ରହିବା ଓ ସେମାନଙ୍କର ବଶ୍ୟବର୍ତ୍ତି ହୋଇ କିଛି ନ କରିବା ଉଚିତ। ସଂସାରର ସମସ୍ତ ଗରିବଙ୍କର — ଜାତି, ରଙ୍ଗ, ଧର୍ମ ବା ରାଷ୍ଟ୍ରର ଭେଦଭାବ ନଥାଇ — ଅଧିକାର ତ ସମାନ। ତୁମର ମଙ୍ଗଳ ଏଥିରେ ଯେ ତୁମେ ଧର୍ମ, ରଙ୍ଗ, ବଂଶ ଏବଂ ରାଷ୍ଟ୍ରୀୟତା ଓ ଦେଶର ଭେଦଭାବ ଲୋପ କରି ଏକଜୁଟ୍ ହୁଅ ଓ ସରକାରୀ ଶକ୍ତିକୁ ନିଜ ହାତକୁ ନେବା ପାଇଁ ଉଦ୍ୟମ କର। ଏହି ଉଦ୍ୟମ ଦ୍ୱାରା ତୁମର କିଛି କ୍ଷତି ହେବନି, କିନ୍ତୁ ଦିନେ ନାଁ ଦିନେ ତୁମର ଶିକୁଳି କଟିଯିବ ଓ ତୁମକୁ ଆର୍ଥିକ ସ୍ୱାଧିନତା ମିଳିଯିବ।

ଯେଉଁମାନେ ଋଷିଆର ଇତିହାସ ଜାଣନ୍ତି, ସେମାନଙ୍କୁ ଜଣା ଯେ ଜାରଙ୍କ ସମୟରେ ସେଠାରେ ମଧ୍ୟ ଏହି ଭଳିଆ ହିଁ ପରିସ୍ଥିତି ଥିଲା, ସେଠି ବି ଅନେକ ଗୋଷ୍ଠୀ ରହୁଥିଲେ ଓ ପରସ୍ପର ମଧ୍ୟରେ ଝଗଡ଼ାଝାଟି କରୁଥିଲେ।

କିନ୍ତୁ ଯେଉଁ ଦିନଠୁଁ ସେଠି ଶ୍ରମିକ-ଶାସନ ହେଲା, ସେଠିକାର ନକ୍ସା ହିଁ ବଦଳି ଗଲା। ବର୍ତ୍ତମାନ ସେଠି ଆଉ କେବେ ବି ଦଙ୍ଗା ହେଇନି। ଏବେ ସେଠି ସମସ୍ତଙ୍କୁ 'ମଣିଷ' ବୋଲି ଧରା ଯାଉଛି, 'ଧର୍ମଜନ' ନୁହେଁ। ଜାରଙ୍କ ସମୟରେ ଲୋକଙ୍କ ଆର୍ଥିକ ଅବସ୍ଥା ଅତ୍ୟନ୍ତ ଖରାପ ଥିଲା, ଏଣୁ ସବୁ ଦଙ୍ଗା ଫିସାଦ ହେଉଥିଲା। କିନ୍ତୁ ଏବେ ଋଷିଆର ଲୋକଙ୍କର ଆର୍ଥିକ ଅବସ୍ଥା ସୁଧୁରି ଗଲାଣି ଓ ସେମାନଙ୍କ ମଧ୍ୟରେ ଶ୍ରେଣୀ-ଚେତନା ଆସି ଗଲାଣି। ଏଣୁ ବର୍ତ୍ତମାନ ସେଠାରୁ କେବେ କୌଣସି ଦଙ୍ଗାର ଖବର ଆସୁନି।

ଏହି ଦଙ୍ଗାଗୁଡ଼ିକୁ ନେଇ ଏମିତି ତ ଅନେକ ଅତି ନିରାଶାଜନକ ଖବରମାନ ଶୁଣିବାକୁ ମିଳୁଥିଲା, କିନ୍ତୁ କଲିକତାର ଦଙ୍ଗାରେ ଗୋଟିଏ ଖୁସିର କଥା ଶୁଣିବାକୁ ମିଳିଲା। ତାହା ଏହା ଯେ ସେହି ଦଙ୍ଗାରେ ଟ୍ରେଡ୍ ୟୁନିଅନର ଶ୍ରମିକମାନେ ଭାଗ ନେଇ ନଥିଲେ କି ସେମାନେ ପରସ୍ପର ମଧ୍ୟରେ କଳିଝଗଡ଼ା କରି ନଥିଲେ। ବରଂ ହିନ୍ଦୁ-ମୁସଲମାନ ସମସ୍ତେ ଅତି ପ୍ରେମରେ କାରଖାନା, ଇତ୍ୟାଦିରେ ଉଠାବସା କରୁଥିଲେ ଓ ଦଙ୍ଗାକୁ ବନ୍ଦ କରିବା ପାଇଁ ଉଦ୍ୟମ କରୁଥିଲେ। ଏହା ଏଥି ପାଇଁ ସମ୍ଭବ ହୋଇଥିଲା ଯେ ସେମାନଙ୍କ ମଧ୍ୟରେ ଶ୍ରେଣୀ-ଚେତନା ଜାଗ୍ରତ ହୋଇ ସାରିଥିଲା ଓ ସେମାନେ ନିଜ ଶ୍ରେଣୀର ହିତକୁ ଭଲ ରୂପେ ଜାଣି ସାରିଥିଲେ। ଶ୍ରେଣୀ-ଚେତନା ହେଉଛି ସେହି ସୁନ୍ଦର ଉପାୟ ଯାହା ସାମ୍ପ୍ରଦାୟିକ ଦଙ୍ଗାକୁ ଅଟକେଇ ପାରିବ।

ଏହି ଖୁସୀ ଖବର ମଧ୍ୟ ଆମ କାନରେ ପଡ଼ିଛି ଯେ ଭାରତର ନବଯୁବକମାନେ ବର୍ତ୍ତମାନ ପରସ୍ପର ମଧ୍ୟରେ ଝଗଡ଼ା ଲଗାଉ ଥିବା ଅବା ଘୃଣା କରିବା ଶିଖାଉ ଥିବା ଧର୍ମଗୁଡ଼ିକ ପ୍ରତି ବିରକ୍ତ ହୋଇ ହାତ ଧୋଇ

ବସୁଛନ୍ତି। ସେମାନଙ୍କ ମନ ବର୍ତ୍ତମାନ ଏତେ ଖୋଲା ଯେ ସେମାନେ ଭାରତର ଲୋକଙ୍କୁ ଧର୍ମର ନଜରରେ — ହିନ୍ଦୁ, ମୁସଲମାନ ବା ଶିଖ — ରୂପରେ ନ ଦେଖି ପ୍ରଥମେ ମଣିଷ, ପରେ ଭାରତବାସୀ, ରୂପରେ ଦେଖୁଛନ୍ତି। ଭାରତର ଯୁବକମାନଙ୍କ ମଧ୍ୟରେ ଏପରି ଚିନ୍ତା ଜନ୍ମ ହେଇଥିବା ହେତୁ ଜଣା ପଡ଼ୁଛି ଯେ ଭାରତର ଭବିଷ୍ୟତ ସ୍ୱର୍ଣ୍ଣାଭ ହେବ ଓ ଭାରତବାସୀମାନଙ୍କୁ ଏହି ଦଙ୍ଗା, ଇତ୍ୟାଦିକୁ ନେଇ ବ୍ୟସ୍ତ ହେବାର ଆବଶ୍ୟକତା ରହିବନି, ବରଂ ଭଲରୁ ଆହୁରି ଭଲ ଭାବେ ପ୍ରସ୍ତୁତ ହୋଇ ଉଦ୍ୟମ କରିବା ଜରୁରି ହେବ ଯେପରି ଏଭଳି ବାତାବରଣ ସୃଷ୍ଟି ହେବନି, ଯା ଫଳରେ ଦଙ୍ଗା ହିଁ ହେବନି।

୧୯୧୪-୧୫ର ଶହୀଦମାନେ ଧର୍ମକୁ ରାଜନୀତିରୁ ଅଲଗା କରି ଦେଇଥିଲେ। ସେମାନେ ବୁଝିଥିଲେ ଯେ ଧର୍ମ ହେଉଛି ଜଣେ ବ୍ୟକ୍ତିର ବ୍ୟକ୍ତିଗତ ବ୍ୟାପାର, ସେଥିରେ ଅନ୍ୟ କାହାର ଦଖଲ ଦେବାର ଅଧିକାର ନାହିଁ। ରାଜନୀତିରେ ମଧ୍ୟ ଏହାକୁ ପ୍ରବେଶ କରାଇବା ଉଚିତ ନୁହେଁ, କାହିଁକି ନା ଏହା ସମସ୍ତଙ୍କୁ ଗୋଟିଏ ଜାଗାରେ ଏକାଠି କରି କାମ କରେଇ ଦେବନି। ଏଥିପାଇଁ ଗଦର ପାର୍ଟି ଭଳି ଆନ୍ଦୋଳନ ଏକଜୁଟ ଓ ଏକପ୍ରାଣ ହୋଇ ରହିଲା, ଯହିଁରେ ଶିଖମାନେ ଏକକୁ ଆରେକ ରୀତିରେ ଫାସିଖୁଣ୍ଟରେ ଝୁଲିଗଲେ ଓ ହିନ୍ଦୁ-ମୁସଲମାନମାନେ ମଧ୍ୟ ପଛକୁ ରହିଲେନି।

ଏହି ସମୟରେ କିଛି ଭାରତୀୟ ନେତା ମଧ୍ୟ ମଇଦାନକୁ ଓହ୍ଲେଇଛନ୍ତି, ଯେଉଁମାନେ ଧର୍ମକୁ ରାଜନୀତି ଠୁଁ ଅଲଗା କରିବାକୁ ଚାହୁଁଛନ୍ତି। ଝଗଡ଼ାର ଅନ୍ତ ପାଇଁ ଏହା ମଧ୍ୟ ଏକ ସୁନ୍ଦର ବିଧାନ ଓ ଆମେ ଏହାର ସମର୍ଥନ କରୁ।

ଧର୍ମକୁ ଯଦି ରାଜନୀତି ଠୁଁ ଅଲଗା କରି ଦିଆଯିବ ତେବେ ରାଜନୀତିରେ ଆମେ ସମସ୍ତେ ଏକାଠି ହୋଇ ପାରିବା। ଧର୍ମରେ ହୁଏତ ଅଲଗା ଅଲଗା ଥାଇ ପାରୁ।

ଆମର ବିଶ୍ୱାସ ଯେ ଭାରତର ସଚ୍ଚୋଟ ସହାନୁଭବୀମାନେ ଆମେ ସୂଚିତ କରିଥିବା ପ୍ରତିକାର ବ୍ୟବସ୍ଥା ଉପରେ ନିଶ୍ଚୟ ବିଚାର କରିବେ ଓ ଭାରତରେ ଏହି ସମୟରେ ଯେଉଁ ଆତ୍ମଘାତୀ କାର୍ଯ୍ୟ ହେଉଛି, ସେଥିରୁ ଆମକୁ ରକ୍ଷା କରିବେ।